# ରଘୁ ଅରକ୍ଷିତ ।

ଉତ୍କଳ ଭାରତୀ

ଶ୍ରୀମତୀ, କୁନ୍ତଳାକୁମାରୀ ସାବତ ।



ମୂଲ୍ୟ ତିନି ଟଙ୍କା ମାତ୍ର ।

# ବକ୍ତବ୍ୟ ।

କ୍ଷୁଦ୍ରର ପୁଣି ବକ୍ତବ୍ୟ କଣ ? ତଥାପି ଯେଉଁମାନଙ୍କର କୃପାକଣା ଲାଭ କରି ଏହି କ୍ଷୁଦ୍ର ଶକ୍ତି ଆଜି ପର୍ଯ୍ୟନ୍ତ ତାର ଅସ୍ତିତ୍ୱର ପରିଚୟ ପ୍ରଦାନରେ କୃତାର୍ଥ ହୋଇଅଛି ସେମାନଙ୍କ ନିକଟରେ ତାହାର ହୃଦୟର କୃତଜ୍ଞତା ଜ୍ଞାପନ କର୍ତ୍ତବ୍ୟ—ସେଥିପାଇଁ ଏଥିର ସୂଚନା ।

ମା ଆନନ୍ଦମୟୀଙ୍କର ଅପାର କରୁଣାବଳରେ ଏହି "ରକ୍ତ ଅରକ୍ଷିତ" ଉପନ୍ୟାସ ଖଣ୍ଡିକ ମୋର ଦେଶବାସୀଙ୍କ ହସ୍ତରେ ଅର୍ପଣ କରିବାକୁ ସକ୍ଷମ ହୋଇଅଛି । କ୍ଷୁଦ୍ର ଶକ୍ତି ଏବଂ ସ୍ୱଳ୍ପଶିକ୍ଷା ଦ୍ୱାରା ମାତୃଭାଷା ସାହାଯ୍ୟରେ ଦେଶ ଓ ଦଶର ଯତ୍କିଞ୍ଚିତ୍ ହିତ ସାଧନ ମୋର ଜୀବନର ବ୍ରତ—ଏଥିରେ ଜୟ ପରାଜୟ, ସଫଳତା ବିଫଳତା, ବିଶ୍ୱପିତାଙ୍କ ହସ୍ତରେ ।

ଏ ନବଜାଗରଣ ଯୁଗରେ ଜଗତର ସମସ୍ତ ଜାତି ପ୍ରାଣପଣେ ଈଶ୍ୱର ବଡ଼ ଦାଣ୍ଡରେ ଧାବମାନ । ଉତ୍କଳୀୟ ଯୁବକବର୍ଗ ମଧ୍ୟ ପୂର୍ବପରି ଉଦାସୀନ ଓ ନିଷ୍କ୍ରିୟ ନୁହନ୍ତି । ସମାଜ, ସାହିତ୍ୟ, ଶିଳ୍ପ, ଶିକ୍ଷାଦି ସବୁ ସ୍ତରରେ ତରୁଣ ପ୍ରାଣର ଜୀବନ୍ତ ସ୍ପନ୍ଦନ ଅନୁଭୂତ ହେଉଅଛି । ଉତ୍କଳ ନାରୀ କାହିଁକି ବା ଉଦର ସର୍ବସ୍ୱ ହୋଇ ନିଶ୍ଚେଷ୍ଟ ଭାବରେ ଗୃହ କୋଣରେ ବସି ରହିବ, ବିଶ୍ୱଜନନୀ ତାଙ୍କୁ ମଧ୍ୟ ସୃଷ୍ଟି କରିଅଛନ୍ତି । ସେ ଗୁଣ୍ଠିତ ମୁଖା-ପରି ତାହାର କ୍ଷୁଦ୍ର କର୍ତ୍ତବ୍ୟ ନୀରବରେ କରିଯିବ ।

ଗତ ତିନି ବର୍ଷ ମଧ୍ୟରେ କାହାରି ସାହାଯ୍ୟର ଅପେକ୍ଷା ନ କରି ପ୍ରଭୂତ ଅର୍ଥବ୍ୟୟ ପୂର୍ବକ ସାନ ବଡ଼ ସାତ ଖଣ୍ଡ ପୁସ୍ତକ ପ୍ରକାଶ ଓ ପ୍ରଚାର କରିବାକୁ ସମର୍ଥା ହୋଇଅଛି; ଛାପାଖାନାମାନଙ୍କରେ ପୁସ୍ତକ ମୁଦ୍ରଣର

ଅଯଥା ବିଳମ୍ବ, ନାନାପ୍ରକାର ଅସୁବିଧା ଓ ବିଶୃଙ୍ଖଳାଦି ଘଟୁ ନ ଥିଲେ ଅଦ୍ୟାବଧି ଅଧିକ ଗ୍ରନ୍ଥ ପ୍ରକାଶ କରି ଦେଶବାସୀଙ୍କ ହସ୍ତରେ ପ୍ରଦାନ କରି ପାରିଥାନ୍ତି । ଯାହାହେଉ ସେମାନଙ୍କର ମୋ ପୁସ୍ତକଗୁଡ଼ିକ ପ୍ରତି ଅକୃତ୍ରିମ ଶ୍ରଦ୍ଧା, ସହାନୁଭୂତି ଓ ଅପର୍ଯ୍ୟାପ୍ତ ଆଦର ସମ୍ମାନ ହେତୁ ଏ ସବୁ ବାଧାବିଘ୍ନ ପ୍ରତି ଭ୍ରୂକ୍ଷେପ ମାତ୍ର ନ କରି ସ୍ଥିରଚିତ୍ତରେ ଅଭୀଷ୍ଟମାର୍ଗରେ ଅଗ୍ରସର ହେବାପାଇଁ ନିତ୍ୟ ନବଶକ୍ତି ଲାଭ କରୁଅଛି ।

ଇନ୍ଦୁ ଅରକ୍ଷିତ ଆଜକୁ ପ୍ରାୟ ତିନିବର୍ଷ ହେବ ପାଣ୍ଡୁଲିପି ଆକାରରେ ପଡ଼ି ରହିଥିଲା । ମୋର କତିପୟ ସାହିତ୍ୟିକ ସୁହୃଦ୍ ଓ ସମ୍ପାଦକମାନଙ୍କର ଉତ୍ସାହ ଦ୍ୱାରା ଅଶାନ୍ୱିତା ହୋଇ ପ୍ରକାଶ କରିବାକୁ ସାହସୀ ହେଲି । ଏହା ଉତ୍କଳ ନାରୀପ୍ରଣୀତ ପ୍ରଥମ ଉପନ୍ୟାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିରେ ବହୁ ଭ୍ରମ ପ୍ରମାଦ ଥିବା ସମ୍ଭବପର । ତଥାପି ଦେବ-ପୂଜାରେ ଦୁବ ବରକୋଳି ପତ୍ରପରି ଏହା ଦେଶବାସୀଙ୍କର ଶ୍ରଦ୍ଧାପୂତ ହସ୍ତରେ ବିନୀତଭାବରେ ଅର୍ପଣ କରୁଅଛି । ଭରସା, ପାଠକପାଠିକା ଦୟା ବହୁ ତ୍ରୁଟି ମାର୍ଜନା ଓ ଗୁଣଗ୍ରହଣ କରି ଏଥିପ୍ରତି ସହାନୁଭୂତି ପ୍ରଦର୍ଶନ କଲେ ସମୁଦାୟ ଶ୍ରମ ସାର୍ଥକ ଜ୍ଞାନ କରିବି । କିମଧିକମିତି ।

ବିନୀତା
ପ୍ରଣେତ୍ରୀ ।

କଟକ
ଅଗଷ୍ଟ ୧୯୨୭ ମସିହା ।



  

ଭାରତବରେଣ୍ୟ ମହାମହିମାମୟ

# ସନାତନ ହିନ୍ଦୁ ଧର୍ମର

ବିଜୟବୈଜୟନ୍ତମୁକୁଟ

# ଶ୍ରୀ ମୁକ୍ତିମଣ୍ଡପ ପଣ୍ଡିତ ସଭା

କବିଙ୍କର ପୁସ୍ତକ ମଧ୍ୟରୁ କେତେ ଖଣ୍ଡି ପାଠ କରି ଲେଖିଅଛନ୍ତି ।

---

ଓଁ

श्री मुक्तिमण्डप
पण्डित सभा
श्री जगन्नाथ
मन्दिर, पुरी ।

ପ୍ରଶଂସା ପତ୍ର ।

ଅଦ୍ୟ ସଭାରେ ଉତ୍କଳଭାରତୀ କୁମାରୀ ଶ୍ରୀମତୀ କୁନ୍ତଳା-କୁମାରୀ ସାବତଙ୍କ ପ୍ରେରିତ ଭ୍ରାନ୍ତି, ପରଶମଣି, ଅଞ୍ଜଳି ଓ ଉଚ୍ଛ୍ୱାସ ଏହି ଗଦ୍ୟପଦ୍ୟାତ୍ମକ ଚାରିଖଣ୍ଡି ପୁସ୍ତକ କେତେକ ଅଂଶରେ ପଠିତ ଓ ଆଲୋଚିତ ହେଲା । ତାଙ୍କର ଲେଖା ସାରଗର୍ଭକ-ଧ୍ୱନି ଭାବ-ପୂର୍ଣ୍ଣ, ସାହିତ୍ୟକ୍ଷେତ୍ରରେ ଏହି ଅଳ୍ପବୟସ୍କା ନବୀନ କବିଙ୍କର ଲେଖନୀ ତୁଳନା ଉତ୍କଳ ମହିଳାମଣ୍ଡଳର ଗୌରବାଧାୟକ । କବି ବହୁ ପରିଶ୍ରମ ସହକାରେ ଗଭୀର ଗବେଷଣାଦ୍ୱାରା କବିତାରେ ଯେଉଁ ଯେଉଁ ଅଦ୍ଭୁତ ଆଧୁନିକରୁଚିର ଅନୁକୂଳ ଭାବ ପ୍ରକାଶ କରିଅଛନ୍ତି, ତାହା ସୁବୋଧ୍ୟ ଓ ସର୍ବବାଦିସମ୍ମତ । ମୁକ୍ତିମଣ୍ଡପ ପଣ୍ଡିତ ସଭା ମଧ୍ୟ

  

କୁନ୍ତଳାକୁମାରୀଙ୍କ କବିତା ପାଠ କରି ଅତ୍ୟନ୍ତ ଆନନ୍ଦମ୍ନ ହୋଇ ପ୍ରକାଶ କଲେ ଯେ ଏହା ଉତ୍କଳ ପକ୍ଷରେ ଗୋଟିଏ ନୂତନ ଦୃଶ୍ୟ । ଅତଏବ ମୁକ୍ତିମଣ୍ଡପ ସଭା ପକ୍ଷରୁ ତାଙ୍କ ଯୋଗ୍ୟତାର ଚିହ୍ନସ୍ୱରୂପ ଏହି ପ୍ରଶଂସା ପତ୍ରଖଣ୍ଡି ପ୍ରଦାନ କରାଗଲା ଏବଂ ଶ୍ରୀମତୀ କୁନ୍ତଳା-କୁମାରୀ ଦୀର୍ଘାୟୁ ହୋଇ ନବ ନବ କବିତାଦ୍ୱାରା ଉତ୍କଳ ସାହିତ୍ୟ-ଭଣ୍ଡାରର ଗୌରବ ବର୍ଦ୍ଧନ କରନ୍ତୁ । ଏହାହିଁ ଶ୍ରୀଜଗଦୀଶ୍ୱରଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା । ଇତି ।

| | |
|---|---|
| ଶ୍ରୀ ଜଗନ୍ନାଥ ମନ୍ଦିର<br>ମୁକ୍ତିମଣ୍ଡପ କାର୍ଯ୍ୟାଳୟ<br>ତା ୧୧।୯।୨୫ | ମହାମହୋପାଧ୍ୟାୟ<br>ପଣ୍ଡିତ ଶ୍ରୀ ସଦାଶିବ ମିଶ୍ର ଶର୍ମା<br>ସମ୍ପାଦକ<br>ମୁ. ମ. ପ, ସଭା । |

# ରଘୁଅରକ୍ଷିତ ।

## ପ୍ରଥମ ଅଧ୍ୟାୟ ।

ଆସନ୍ତା କାଲି ରଜ । ରଘୁର କକେଇ ହୃଷୀକେଶ କଟକରୁ ଆ[illegible]ନ୍ତି—ଧାଲବାର କାମ ଦେଖିବା କଥା ।

ଆଜ ବଡ଼ି ଅନ୍ଧାରୁ ଟପର ଟପର ଝଡ଼ି କରୁଛି, ଦେଳ ଦଶ ଘଡ଼ି ହେଲାଣି ଛାଡ଼ିବାକୁ ନାହିଁ, ଆକାଶ ଅନ୍ଧାର କରି କଳାହାଣ୍ଡିଆ ମେଘ ଲଟେଇଛି । କାନ୍ଥରେ ଗୋବର ଗାରଟା ମୋଟ କରି ଟାଣିଦେଇ ଗୋବର ହାଣ୍ଡି ରଖୁ ରଖୁ ରସକଳା ରଘୁକୁ ଅନାଇ କହିଲା, "ପୁଅ, ଏ ବର୍ଷ କଣ କେଳୁଣୀ ହାତରେ ଅଛି ?"

"ହଁ ଖୁଡ଼ି, ପାଳକ ଭଲ ହବ । ବାପୁ ଅବଧାନେ ଖଡ଼ି ପକଉଥିଲେ— ଆମର ଏଥର ଧାନ ଭଲ ହବ ।"

"ମହାପୁରୁଙ୍କ ଦୟା । ବାପ ତମେ ବର୍ଷାରେ ତିନ୍ତ ନା, ଜର ହବ; ହାତ ଗୋଡ଼ ଧୋଇ ଆସ, କକେଇ ସାଙ୍ଗରେ ବସିଯିବ ।'

ନଜେ ହାତ ଗୋଡ଼ ଧୋଇ ଲୁଗା ପାଲଟି ଠା କରି ସ୍ୱାମିଙ୍କ ପକାଶେ ଭାତ ତିଅଣ ଟରଣି ରସକଳା ସେଷେଇଶାଳ ପିଣ୍ଡାରେ ପାନବଟା ଘେନି ପାନ ଭାଙ୍ଗି ବସିଲା । ହୃଷୀକେଶ ଭାତ ଖାଉ ଖାଉ ରଘୁକୁ ଲକ୍ଷ୍ୟ କରି କହିଲେ, "ହଇହେ, ହ୍ୟାକୁ କଆଁ ଛାଡ଼ି ଦେଉ ନା— ଜାଣୁ ଜାଣୁ କଣ ବିଷ ଗାଛ ସେଉଚ କି ? ହ୍ୟା ଫଳ ଶେଷକୁ କଣ ହବ ଜାଣ ତ ?"

ରସକଳା ସ୍ୱାମିଙ୍କ କଥା ଶୁଣି କି ଉତ୍ତର ଦବ. ବୁଝି ପାରିଲା ନାହିଁ । ନୀରବରେ ପାନଖିଲ ବସି ମୋଡ଼ିଲା । ସେ ଟିକିଏ ଚଳିତ; ମୁଁ ତା ଆର ହେବ,

ସଦ୍‌ବ୍ୟବହାର ଓ ମିଷ୍ଟ ଭାଷା ମନେ ପଡ଼ିଲା,—ହୃଦୟ ଦୁଃଖରେ ପୂର୍ଣ୍ଣ ହେଲା । ସେ ରଘୁନାଥର କରୁଣ ମୁଖକୁ ଗୁହିଁ ସ୍ୱାମିଙ୍କ ତିରସ୍କାରର ତୀକ୍ଷ୍ଣତା ନୀରବରେ ସହ୍ୟ କଲା, କିନ୍ତୁ ତାହାର ଏପରି ନୀରବ ଭାବ ହୃଷୀକେଶକୁ ଆଦୌ ଭଲ ଲାଗିଲା ନାହିଁ । ସେ କିଛିଏ ବିରକ୍ତ ହୋଇ କହିଲା– "ଭଲ କଥା କହିଲେ ଲୋକଙ୍କ କାନକୁ ପଶେ ନାହିଁ, ପରେ ସବୁ ବୁଝିବ ଯେ । ଇଲାଗେ ପିଲା ହେଉଛି, ଖୁଡ଼ୀକୁ ସୁଆଗ ଲାଗିଛି । ଯେତେବେଳେ ମୁଣ୍ଡକୁ ହାତ ପାଇବ, ସେତେବେଳେ କି ଖୁଡ଼ୀ, କି ଖୁଡ଼ୁତା ! ଚିଲାଦିନୁ ପୋଷି ପୋଷି ମଣିଷ କଲି; ଘଣ୍ଟ ଅରକ୍ଷିତଆଣୀ ତ ନକେ ମଲା, ଏ ଜଳଜଳାକୁ କିଆଁ ଗ୍ରୁଡ଼ିଗଲା କେଜାଣି ?" କକେଇର କଥା ରଘୁର କର୍ଣ୍ଣରେ ପଶି ମର୍ମରେ ବାଜି ଗଲା, ମୃତ ଜନନୀର ମୃତ୍ୟୁକାଳୀନ ଦୃଶ୍ୟ ମନେ ପଡ଼ିଲା—ବଡ଼ ବଡ଼ ଦୁଇ ଟୋପା ଲୁହ କଳାଭ୍ରମର ସଦୃଶ ତା ଆଖି କୋଣରେ ଛଳଛଳ ହେଲା । ରଘୁ ତଳକୁ ମୁଣ୍ଡ ପୋତି ଭାତଥାଳୀକୁ ଅନାଇ ରହିଲା— ଗୁଣ୍ଡା ବଳି ମୁହଁକୁ ନେବାକୁ ସାହସ ହେଲା ନାହିଁ । ରସକଳା ତାହାର ପତିଙ୍କ ଭାବ ଲକ୍ଷ୍ୟ କରି ସ୍ୱାମିଙ୍କୁ ତିରସ୍କାର ଛଳରେ କହିଲା, "କେତେ ଉପେଇ ହୁଅ । କରିଚ ତ କରିଚ, ଦାଣ୍ଡରେ ଗାଇଲେ ହବ ? ନିଜ ଭାଇ ଭାଉଜଙ୍କ ପଗ୍ୱରିଛ ତ କାହାକୁ ପର ପୋଷି ନାହିଁ ।"

ହୃଷୀକେଶ ରସକଳାର କଥା ନ ସରୁଣୁ ଅତି ଉଚ୍ଚସ୍ୱରରେ କହିଲା, "ବକ୍ ବକ୍ ହ' ନା, ଦୟାଧର୍ମପଣ ରଖି ଦେ । ମୋପରି ହାଡ଼ ଭଙ୍ଗି ରୋଜଗାର କରୁଥିଲେ ବୁଝନ୍ତୁ । କଟକ ପରି ସହରରେ ପିଲାଟିଏ ପୋଷିବା ନୁହେ ଯେ, ହାତୀଟିଏ ପୋଷିଲା ପରି । ଭାତ ଖରଚଠୁ, ଲୁଗା ଖରଚଠୁ, ଧୋବା ଭଣ୍ଡାରୀ ଖରଚଠୁ ସବୁ ଗୋଟି ଗୋଟି ଦବାକୁ ହବ—ଏତେ କିଏ ସମ୍ଭାଳିବ ! ହାକୁ ପାଳିଲେ ମୋ କୂଳରେ ପାଣି ଦବ ପରା—ମୋ କୁଳ ଉଜ୍ଜ୍ୱଳ କରିବ ? ଛେଉଣ୍ଡ ଅର୍କ୍ଷିତଟା ଯେମିତି ଭାତ ପାଣି ଖାଇ ପଡ଼ି ରହିଚି, ରହୁ । ଏ ଥର ଗ୍ରାମ ବାବୁଙ୍କୁ କାଢ଼ିଦିଅ । ଦଶ ବର୍ଷର ଟୋକା ହେଲାଣି, ସବୁ କରିବ । ମୁଣ୍ଡ ଝାଳ ତୁଣ୍ଡରେ ମାଇଲେ ଭାତ ପାଣି ମିଳିବ ହିନା । ଆଉ ବସି ବସି ବାବୁ ପରି ଖୁଡ଼ୀ ଖୁଡ଼ୁତାଙ୍କ ରୋଜଗାର ଖାଇଲେ ତ ହବ ନାହିଁ ।"

ରଘୁ ଆଖିରୁ ଟପଟପ ହୋଇ ଲୁହ ଭାତଥାଳୀରେ ପଡ଼ିଲା, ଗ୍ରାସ ଭିତର କୋହରେ ଫାଟିଗଲା । ସେ ନୀରବରେ ମୁହଁ ହାତ ଧୋଇ ଉଠିଗଲା; ବାରି ପିଣ୍ଡା ଓଳିତଳେ ବସି ଜନନୀକୁ ସ୍ମରଣ କରି ଅନେକ କାନ୍ଦିଲା । ଆଜି ତାର ସଂସାରରେ କେହି ନାହାଁନ୍ତି—ସେ ଅରକ୍ଷିତ । ତାର ପ୍ରାଣ ଉଦାସୀ ହେବାକୁ ଲାଗିଲା ।

ବେଳା ଦ୍ୱିପ୍ରହର । ମେଘ ଗ୍ରୁଡ଼ିଯାଇ ଆକାଶ ପରିଷ୍କାର ହୋଇଗଲାଣି, କିନ୍ତୁ ଗଛପତ୍ର ଦେହରୁ ପାଣି ଏବେ ସୁଦ୍ଧା ଝର ଝର ଭୂଇଁରେ ପଡ଼ୁଛି ।

ଓଳିତଳେ ସାନ ନାଳରେ ଅଳପ ଅଳପ ପାଣି ଉପରେ ଖରା [illegible] ଚକ୍‌ଚକ୍ ଦିଶୁଛି । ଗୋଟିଏ ଦୁଇଟି କାଉ ଗହଳ ଆମ୍ବଗଛ ପତ୍ର [illegible] ରେ ବସି ମାଉ-ସିଆଁ ପକ୍ଷ ଝାଡ଼ି ଦେଉଛନ୍ତି, ମଝିରେ ମଝିରେ କା' କା' କରି ରାବ ଉଠାଉଛନ୍ତି । କୋମଳ ଘାସ, ଆଉ ଶ୍ୱେତପୁରୁଣି ଦଳରେ ପାଣିବିନ୍ଦୁଗୁଡ଼ିକ ଖର-ତେଜରେ ମୁକ୍ତାପରି ଝକଝକ ଦିଶୁଛି । ବାଳକ ଏ ସବୁକୁ ଅନାଇଛି, କିନ୍ତୁ ତାହାର ଦୃଷ୍ଟି ଶୂନ୍ୟ, ଉଦାସ—ତାହାର ମନ ଜଗତଠାରୁ ନାହିଁ କେଉଁ ଦୂର ଦୂରାନ୍ତର ରାଜ୍ୟରେ ନିବଦ୍ଧ । ସେଠାରେ ତାର ମାତା, ପିତା, ସ୍ନେହର ନାମୀ ରତମା ବିଦ୍ୟମାନ । ଆହା ! ତିନି ଜଣଯାକ ତାକୁ ଛାଡ଼ି କୁଆଡ଼େ ଗଲେ ! ସେ ତ ସେମାନଙ୍କର କୋଟିନିଧି ଥିଲା, ରତମା ନାମୀ ଦଣ୍ଡେ ତାକୁ କୋଳରୁ ଅନ୍ତର କରୁ ନ ଥିଲା । ରତମା ନାମୀ ମଲା, ବାପା ମଲେ ବୋଉ ମଲା, ଆଉ ରହିଲା ରଘୁ ! ତାର ଜୀବନ ଏଡ଼େ ଛାଣ ! କକେଇର କଥା ସହିବାକୁ ଠାକୁର ତାକୁ ଏ ଦଶା ଦେଇଲେ କିନା ! ବାଳକ କେତେ କଣ ଭାବି ଭାବି ସେହିଠାରେ ଶୋଇ ପଡ଼ିଲା ।

ରସକଳା ରଘୁକୁ ଏ ଘର ସେ ଘର ଖୋଜି ଖୋଜି ବାହାରି ଆସି ଦେଖିଲା—ଓଳିତଳ ପିଣ୍ଡାରେ ରଘୁ ଶୋଇଛି । ପିଣ୍ଡାଟି ଉଜ୍ଜ୍ୱଳ କରି ଯେପରି ସୁନା ଫୁଲଗୁଡ଼ିଏ ପଡ଼ି ରହିଛି । ଦଣ୍ଡେ, ଦୁଇ ଦଣ୍ଡ, ରସକଳା ସ୍ତବ୍ଧ ସ୍ତବ୍ଧ ସ୍ନେହରେ ବଶୀଭୂତା ହେଲା । ଏହି ବାଳକ—କାହିଁକି କେଜାଣି, ତାର ସ୍ୱାମୀର ଶତ ତିରସ୍କାର ସତ୍ତ୍ୱେ ଏ ବାଳକଟିକୁ ସେ ଏତେ ଭଲପାଏ, ତାହାର ପ୍ରତ୍ୟେକ ଅବୟବର ଅନୁପମ ଲାଳିତ୍ୟରେ ମୁଗ୍ଧ ହୁଏ । କଞ୍ଚା ସୁନାପରି ବର୍ଣ୍ଣ, ଅଳତାଗୋଳା ପରି ହାତ ପାଦ, ଜବା ଫୁଲ ପରି ଓଠ, ଧନୁ ପରି ଭ୍ରୂଲତା, ନୀଳ ପଦ୍ମପାଖୁଡ଼ା ପରି ବଡ଼ ବଡ଼ ଭସା ଭସା ଆଖି ଯୋଡ଼ିକ, କଜ୍ଜଳ-କାଳିଆ ଝଙ୍ଗ ଝଙ୍ଗ କେଶ କପାଳ ଉପରେ, ପଟାପରି କପାଳ, ଆଖିପତାରେ କିଏ କଜ୍ଜଳ ମାଖି ଦେଇଛି ପରା ! ଖଣ୍ଡାପରି ନାକଟି, ଆଉ ସରଳ ସୁଢ଼ଳ ଅବୟବ ଗୋଟିକୁ ଗୋଟିଏ ସାଜିଛି । ଏଡ଼େ ସୁନ୍ଦର, ଏଡ଼େ କୋମଳକାୟ, ଏଡ଼େ ଧୀର ପିଲାଟି ପୁଣି ତା କକେଇର ବି ଆଖିର ବିଷ । ହା ଦଇବ ! ଏଡ଼େ ହୀନ କପାଳ ! ପରମ ସ୍ନେହରେ ରସକଳା ବାଳକ ଦେହରେ ହାତ ବୁଲାଇଲା, ଆଖିରୁ ଝର ଝର ଲୁହ ବୋହି ଗଲା—ସ୍ୱାମୀ ସହିତ ଘଡ଼ିକ ଆଗର କଳହ ମନେ ପଡ଼ିଲା । କାହା ସକାଶେ ସ୍ୱାମୀ ତାକୁ ଏତେ ତିରସ୍କାର କଲା କେବଳ ରଘୁନାଥ ! ରଘୁନାଥ ତାର କିଏ ? ପୁଅ ନୁହେ—ପୁରୁଷ, କିନ୍ତୁ ତା ପାଇଁ ପେଟ ଭିତର ପୋଡ଼ି ଉଠୁଛି କାହିଁକି ? ତାକୁ ପଦେ କିଏ କହିଲେ ରସକଳା ଦଶ ପଦ ଶୁଣାଇବାକୁ ଛାଡ଼େ ନାହିଁ କାହିଁକି ? ରଘୁ ତାର ପୁରୁଷ—ନା, ନା, ରଘୁ ତାର ପୁଅ । ସେ ତ ଖୁଡ଼ୀ; ମା ଆଉ ଖୁଡ଼ୀରେ ଭିନ୍ନ କଣ ? ରଘୁ ତାକୁ ମା ଭଳି

ଅନ୍ୟ ଘରେ ନାହିଁ । ତାର ପଣନ୍ତରେ ମୁହଁ ଲୁଚାଇ ଆପଣାର ସବୁ ସୁଖ ଦୁଃଖ କହିବାକୁ କୁଣ୍ଠିତ ହୁଏ ନାହିଁ । ରଘୁ ତାର ଗଣିମାନ; ହେଲେ ବା ସେ ବଡ଼ଲୋକ, ଆଉ ରଘୁ ଦରିଦ୍ର । ତା ବୋଲି ଘରକର କାମରେ ତାକୁ ଖଟାଇବ ? ନା, ରସକଳା ତା ପାରିବ ନାହିଁ । ରଘୁର କୋମଳ ଅଙ୍ଗର ସାମାନ୍ୟ ପୀଡ଼ା ତା ଗ୍ରନ୍ତରେ ଛୁରିତର ବାଜିଯାଏ ସେ ରଘୁକୁ ଅନ୍ତର କରି ପାରିବ ନାହିଁ । ସ୍ୱାମୀ କହିଲେ କଣ ହେଲା, ଦିଅଁ ଦେବତା କହିଲେ କଣ ହେଲା ! ଖୁଡ଼ୀର ସ୍ନେହସ୍ପର୍ଶରେ ରଘୁର ନିଦ୍ରା ଭଗ୍ନ ହେଲା । ସେ ଆଖି ମଳି ସ୍ନେହଦୃଷ୍ଟିରେ ଖୁଡ଼ୀକୁ ଅନାଇଲା । ଖୁଡ଼ୀ ମଧୁର କଣ୍ଠରେ କହିଲା, "ବାପ , ମାଟିରେ କାହିଁକି ଶୋଇଲ, ଘରେ ଶେଯ ପାରି ଶୋଇଲ ନାହିଁ ?"

ରଘୁନାଥ ଦୁଃଖପୂର୍ଣ୍ଣ କଣ୍ଠରେ କହିଲା "ଖୁଡ଼ି, ମୁଁ ଅର୍କ୍ଷିତଟା, ମୋର ଶେଯ ଯା, ମାଟି ତା; ଯାହାର ବାପ ମା ନାହାନ୍ତି ତାର—"

ବାଳକ ଆଉ କହି ପାରିଲା ନାହିଁ, ଖାଲି କଇଁ କଇଁ ହୋଇ କାନ୍ଦିଲା । ଖୁଡ଼ୀ ପଣନ୍ତ କାନିରେ ଲୁହ ପୋଛି ଦେଇ ଗଭୀର ସ୍ନେହରେ କହିଲେ, "ବାପ, ତମେ ଅବା ମୋ ପୁଅ -ମୁଁ ତମ ମା ।"

ରଘୁ ଉତ୍ତର କଲା -"ଖୁଡ଼ି, ତମେ ବନାର ମା, ଗଉରୀର ମା । ମୋ ମା ନ ଥିଲାକୁ ସିନା କକେଇର ଏତେ କଥା ସହୁଚ !"ବାଳକ ପୁଣି କାନ୍ଦିଲା ।

ଖୁଡ଼ୀ ସାନ୍ତ୍ୱନା ଛଳରେ କହିଲେ, "ବାୟା ହେଲ ପୁଅ ! ସେ କକେଇ —ସେ ମାରିବେ, ସେ ତାରିବେ । ତମେ ପୁଅ, ବଡ଼ଙ୍କର ଦି କଥା ସହିଲେ ଠାକୁରେ ତମର ଭଲ କରିବେ । ତମେ ପରା ପିଲା !"

ରଘୁ ଆଶ୍ୱସ୍ତ ହେଲା । ଖୁଡ଼ୀ ପିଠି ଉପରେ ହାତଟି ଲଦି ଦେଇ ଆନନ୍ଦରେ ଖୁଡ଼ୀ କାନର ଗଣ୍ଠିଆ ପରୀକ୍ଷା କରୁ କରୁ କହିଲା, "ଖୁଡ଼ି, ବଡ଼ ସୁନ୍ଦର ଦିଶୁଚ ଏଙ୍କା । କଟକ କାମ କି ନା ! ଏଥର କକେଇଙ୍କୁ କହି, ହାର କରି ଆଣି ଦେବେ । ମୁରୁଯ ଆଈ ବେକରେ ଯେଉଁ ହାର ଅଚ୍ଛି ସିମିତିକା,ତମକୁ ମାନିବ ।"

ଖୁଡ଼ୀ କିଛି ନ କହି ଅଳପ ହସି ଦେଇ ଘର ଭିତରକୁ ଗଲେ । ରଘୁ ଉଠି 'ସୋମି', 'ପାଟ', ଆଉ 'ଦୁଲଣୀ'କୁ ବାନ୍ଧିବାକୁ ଗୁହାଳକୁ ଗଲା । ସଞ୍ଜ ବୁଡ଼ି ଆସୁଥିଲା, ରସକଳା ସନ୍ଧ୍ୟାବଳିତା ଜାଳି ପିଣ୍ଡାରେ ଥୋଇ ଦେଲା ।

ପରଦିନ ଉଷାଲୋକ ସଙ୍ଗେ ସଙ୍ଗେ ଗାଁ ଗଉପଥିଙ୍କ ଘରେ ମଙ୍ଗଳମହୁରୀ ବାଜି ଉଠି, 'ରଜ' ଉତ୍ସବର ଶୁଭାଗମନ ଜଣାଇ ଦେଲା । ଗାଁ ସ୍ତ୍ରୀଲୋକେ ପାଟ-

ଲୁଗା, ଗହଣାଗଣ୍ଠିରେ ସଜବାଜ ହୋଇ ଧାଡ଼ ଧାଡ଼ ଆସି ଶତପଥୀଙ୍କ ବୃହତ୍ ଅଗଣାରେ ପଶିଗଲେ । ଆଜ ମହାନନ୍ଦର ଦିନ !

ରଜ ପାନ ବାଣ୍ଟୁ ବାଣ୍ଟୁ ପରଆ ନାମୀ ରସକଳାକୁ ଲକ୍ଷ୍ୟ କରି କହିଲା, "ଏ ବୋହୂ ! ତୋର ସବୁଦିନେ ଏ କି କଥା ! କାଲି ଭାଇନା କହୁଥିଲେ —ତୁ ତାଙ୍କ ସଙ୍ଗେ କଳି କରିଚୁ, ଏ ସବୁ କି କଥା !" ରସକଳା ନିତାନ୍ତ ତାଚ୍ଛଲ୍ୟ ଭାବରେ କହିଲା, "କରିବି ନାହିଁ ଗ୍ରୁଡଦେବି, ପୁରୁଷକୁ ଗଣ୍ଡେ ଭାତ ଦିବ ଯେ, ଗାଁଯାକ ଗାଇବ । ଉଠ ମ, ମତେ ସେ ସବୁ ଭଲ ଲାଗେ ନା । ପୁଅ କିଏ, ପୁରୁଷ କିଏ—ଏକା ନାହି ଦିଖଣ୍ଡ ।"

"ଏକାଳରେ ଏତେ ଦୟାଧର୍ମ କିଏ କରୁଚି ? 'ମୋ ଆଳଆ ଲେଖାକୁ ବାଲିଆ ବନ୍ଧୁ, ପାଳଦଉଡ଼ିକୁ କେତେ ବାନ୍ଧୁ ।' ଗୋପୀନାଥ ଆଉ ହରୁଷୀ ତ ଏକା ମାଙ୍କର କହନ୍ତି ?"

"ତମେ ତମ ଭାଇ ଆଡ଼କୁ ଲଢ଼ି କହିବ । ରଘୁର ପିଉସୀ ଥିଲେ ସେ ସମ୍ପତ୍ତି ତା ପୁରୁଷ ଆଡ଼କ କହନ୍ତା । ବାପ ତ ଏକା; ଆମ ଘର ବିଲ-ବାଡ଼ିରେ କଣ ଟୋକାଟର ଭାଗ ନାହିଁ କି ? ତାକୁ ମୁଠାଏ ଭାତ ଦେଲେ ଆମର ଦୟାଧର୍ମ କିଆଁ ହବ ? ହକ ତାର ମାଲ ସେ ଖାଇବ । ସେଥିରେ ପାଞ୍ଚ ଭଲ୍ଲୋକ ପଶିବା ଦରକାର କଣ ? କିଏ କଣ ଗଣ୍ଡାଏ ପୁଞ୍ଜାଏ ଦେବେ ନା, ହାତେ ଦିହାତ ଦେବେ—ଏତେ ଗ୍ରୁଡ ଫାଟିଯାଏ କିଆଁ ?"

ପରଆ ନାମୀ ରସକଳା କଥାର ମର୍ମ ବୁଝି ପାରି କହିଲା, "ତୁ ଦଉଥା, ତୋର ସବୁ ନାହିଁ—ଗୁଳିଆ ଉପରେ ଆଣ୍ଠୁ ବାନ୍ଧିଲୁଣି; ଆମେ ତ ଗରିବ ଲୋକ, ଆମ ପେଟକୁ ନିଅଣ୍ଟ, ଦୟାଧର୍ମ କରି ଫୁଲେଇ ହବୁ କୋଉଠୁଁ ?" ରସକଳା ମଧ୍ୟ ଉପଯୁକ୍ତ ପ୍ରତିଉତ୍ତର ଦେଇ ଆସି ମସିଣା ଉପରେ ବସିଲା । ରଘୁ ଗଉଣୀକୁ ଗାଁଯାକ ବୁଲାଇ ଆଣି, ଏବେ କାନ୍ଦିବାରୁ ମା କତିରେ ଗ୍ରୁଞ୍ଜିବାକୁ ଆସିଲା । ତା ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ଗର୍ବିତା ଶତପଥୀଙ୍କ ଗୃହିଣୀ ସୂର୍ଯ୍ୟମୁଖୀ ଓରଫେ ସୂର୍ଯ୍ୟି ମାଇଁ ରସକଳାକୁ ଉଦ୍ଦେଶ କରି କହିଲା, "ହଇ ହେ ବନା ବୋହୂ ! ଏ ତମ ସଙ୍ଗ ଧରିଲାଣି କି ? ତମର ଏକା ବଡ଼ ଦୟାଧର୍ମ । ଲୋକେ କହନ୍ତି ପରା—'ହରୁଷୀ ବୋହୂ ପରି ଆମ ସାହିରେ ବୋହୂ ନାହାନ୍ତି ।' ଆଉ ସ୍ୱାମୀ ମ, ଗଲାଣି ତ ଅର୍ଦ୍ଧାଙ୍ଗିଆଣୀ ମରି ପୋଡ଼ି ଜଳିକାଳି ଗଲାଣି । ବାପ ଲୋ, ତା ଗରବ କହିଲେ କାହାଣି ଛପଣ । ବଡ଼ ଲୋକ ଝିଅ ଦେଖେଇ ହଉଥିଲା । ଯେମିତି ଗରବ, ସେମିତି ଫଳ ଏକା । ପିଲାଟାକୁ ଅରକ୍ଷିତ କରି ଏକା ଝାଡ଼ାକଇରେ ମା ଝିଅ ଗଲେ ତ ! କହନ୍ତି ନାହିଁ—'ଦୁଧ ଉତୁରିଲେ ଚୁଲିରେ ପଶେ, ମଣିଷ ଉତୁରିଲେ ଗାତରେ ପଶେ ।' ଏତେ ଠାଣ କି ଦଇବ ସହେ !"

ରଘୁନାଥ ସୁନ୍ଦି ଆଈ କଥାରେ ଲଜ୍ଜିତ ହୋଇ ମୁହଁ ତଳକୁ କଲା । ସେ ଅରକ୍ଷିତ, ଏ କଥା ଜଣ ପୃଥିବୀଯାକ ତାକୁ ବୁହାଇ ବୁହାଇ କହିବେ ? କ'ଣ କହି କହିଲା ହେଲା ନାହିଁ, ପୁଣି ମାତାର ଚିର ଶତ୍ରୁ ସୁନ୍ଦି ଆଈ କହିଲା—ମା ଭଉଣୀ ନ ଥିବ; ଏତେ ଲୋକଙ୍କ ଆଗରେ ଏପରି କଥା, ତାହାର ପ୍ରାଣରେ କଣ୍ଟା ଫୁଟିଲା ପରି ବଡ଼ ବ୍ୟଥା ହେଲା । ଖୁଡ଼ୀ ତା ମୁହଁକୁ ଅନାଇଲା । ସହାନୁଭୂତରେ ଅତି ଧୀରେ କହିଲା -"ରୁନ ଥା; ବଡ଼ କଳହୁଡ଼ୀଟା ।"

ଏହା କହି ବେଦନପରିପୂର୍ଣ୍ଣ ଗୌଖିକୁ ରୁନ କରୁ କରୁ କହିଲା, "ଯାଉଚ ହେ—ବସି ପାରିବ ନାହିଁ, ଟୋକାଟାକୁ ନିଦ ଅଇଲାଣି ।" ତା ପଛେ ପଛେ ଶାମବୋଉ ଓ ତାରଣୀ ପହଞ୍ଚି ଗଲେ । ସମସ୍ତେ କଉଡ଼ି ଖେଳର ପ୍ରସ୍ତାବ କଲେ ।

ଏଥର ଦୁଇ ପଖା ହୋଇ ବୁଢ଼ୀ ଆଉ ଯୁବତୀମାନେ ବସିଗଲେ । କଉଡ଼ି ଖେଳ ପାନଖିଆ ସଙ୍ଗେ ସଙ୍ଗେ ଶତସହସ୍ର ପରଚର୍ଚ୍ଚା, ପରନିନ୍ଦା ଆରମ୍ଭ ହେଲା । ହୁରୁଷୀ ପରିବାରର ଚର୍ଚ୍ଚାରେ ବ୍ୟସ୍ତ ତାରଣୀ ସୁନ୍ଦି ମାଉସୀଙ୍କୁ ଅନାଇଁ ଲଳିତ ସ୍ୱରରେ କହିଲା, "ଏ ମାଉସି, ଦେଖିଲୁ ରସ ମାଈକି ? ଏଥର କଟକରୁ ନୂଆ, ଗଣ୍ଠିଆ ହଳେ, କଣ୍ଠାକଡ଼ି ହଳେ କରି ଆଣିଚି —ବଡ଼ ସୁନ୍ଦର ଏକା ! ଆମ ଗାଁରେ ଆଉ କାହା କାନରେ ସେମିତି ନାହିଁ । ଆଜକାଲି ସ୍ୱାମୀଙ୍କ ହାତରେ ଦି ପଇସା ଥିବାରୁ ଏମାନେ ମଣିଷ ଚହ୍ନୁ ନାହାନ୍ତି ! ହୁରୁଷୀ ମାମୁର ଯୋଉଁ ଗରବ !" ସୁନ୍ଦି ମାଉସୀ ଯୋଗ ଦେଇ କହିଲା—"ତା ପରି ନୂଆ ଲୋ ଝିଅ, ହୁରୁଷିଆର ଯୋଉଁ ସ୍ୱଭର ! ହେଲେ ତାଙ୍କ ଚଉଦପୁରୁଷ ଖବର ମତେ ଜଣା । 'ଏ, ଆଗେ ଖାଉଥିଲେ ପେଜ, ଏବେ ଆଣି ଏ ବଡ଼ହଳ ଶେଯ ।' ମୁଁ ବୁଢ଼ୀ ହେଲିଣି ପରା, ହୁରୁଷିଆ ପରି ଜଲଆ, ଭଣ୍ଡିକଟା କାହାକୁ ଦେଖି ନାହିଁ; ଏଡ଼ିକ ଲୋଭ—ଭାଇର ସବୁ ଖାଇଲା, ଭାଉଜର ସବୁ ଗହଣା ବନ୍ଧକ ରଖି ଯା ପାଇଁ ଗହଣା ଗଢ଼ିଚି । ଏ ରସକଳାକୁ ସମାନ ବୁଝିଚୁ—ବଡ଼ ଉତରମାରୁ ।"

ଚନ୍ଦ୍ରମଣୀ ପେଉଟୀ ମେଣି ଯାଇ କହିଲା—"ହଁ ଲୋ ଖୁଡ଼ି, ରଘୁକୁ ତ ଏଇମାନେ ଦାଣ୍ଡରେ ବସେଇଲେ 'ଖୁଡ଼ୀଟା ବଡ଼ ମଉଳମୁହାଁ' ଚତୁରୀ ଏକା ।" ଶାମାବୋଉ କଉଡ଼ି ଦାନ ପକଉ ପକଉ କହିଲା--"ରସକଳା ବିଗୁଣୀ ଏ ସବୁରେ ନ ଥାଏ—ସବୁ ହୁରୁଷିଆର ଫନ୍ଦି । ଆଲୋ ବୋଉ ଲୋ ! ସେ କଥା ପରା ମୁଁ ଭୁଲିବି ନାହିଁ, ଦିନ ଦି'ପହରଟାରେ ଶାଉଜକୁ ଘରୁ କାଢ଼ିଲା ! ତା ମା ଏକା ବଡ଼ ବୋହୂକୁ ଦି ଆଖିରେ ଦେଖି ପାରୁ ନ ଥିଲା !"

ତାରଣୀ—କିମିତି ଦେଖିବ ! ବଡଘର ଝିଅ, ଅଲିଅର ହୋଇ ବଢ଼ିଥିଲା । ସ୍ୱାମୀଙ୍କ ଘରକୁ ଆସି ଦି'କଡ଼ାର ହେଲା । ସେ ଗୋପୀନାଥ ମାମୁ କାଣେ କାମ କରୁ

ନ ଥାନ୍ତା--ସେବର୍ଷରେ ଅଜା ଝିଅ ନ ହଅନ୍ତା । ଗାଁଲୋକ ବି କହୁଥିଲେ । ସେ କାହାର କଥା ଶୁଣିଲୁ କି ? ମାଈଁଟା ବଡ଼ ହୁଣ୍ଡୀ ଥିଲା । ରସ ମାଈଁ ସଙ୍ଗେ ମିଶି ଗୋପୀନାଥ ମାମୁ ମଲା ପରେ ସବୁ ପୁଅର ହାତରେ ଟେକି ଦେଲା । ମୁଁ ସ୍ୟାଙ୍କୁ ଦିସ ଦି ଆଖିରେ ଦେଖି ପାରେ ନାହିଁ । ଏବେ ରସ ମାଈଁ କହେ, କୁଆଡ଼େ ଇନ୍ଦୁକୁ କଟକ ପଠେଇବ ।"

ଶାମାବୋଉ—ମତେ ବିଶ୍ୱାସ ହଉ ନାହିଁ । ହୁରୁଡିଆ ଇନ୍ଦୁକୁ ବସା-ଠାଇଁକି ନବ ? ତାକୁ ଏଠି ତ ଦି ଆଖିରେ ଦେଖି ପାରେ ନାହିଁ । ହେଇଥିବ, କିଏ ଜାଣେ ଲୋ ମା !

ଗୋଟି ପାଚଲାଣି କି ନାହିଁ, ଦେଖୁ ଦେଖୁ ଚମ୍ପା ମୁରୁକି ହସା ଦେଇ କହିଲା, "ସତ ତ ନବ ! ସ୍ୟାର ଦରମା ବତିଶ—ଆଠ ଟଙ୍କାରୁ କୋଡ଼ିଏ ଟଙ୍କା ହେଇଚ; ତା ପାଆନ୍ତା ତାକୁ ବଡ଼ ସୁଖ ପାଆନ୍ତି, ଅଉ ସାଲକୁ କୋଠା କରିବ ।"

ଗ୍ରାମ ମଧ୍ୟରେ ସୂର୍ଯ୍ୟ ଓରଫେ ଶତପଥିଙ୍କ ଗୃହିଣୀର କୋଠା ଛଡ଼ା ଆଉ କାହାର କୋଠା ନାହିଁ । ସେ ଶେଷୋକ୍ତ କଥା ଶୁଣି ଈର୍ଷାରେ କହିଲା--"କରୁ କୋଠା । ପରତଣ୍ଟି ଚପି କୋଠା କଲେ ଏକାଦିନକେ ଭୁଷୁଡ଼ି ପଡ଼ିବ ନାହିଁ କି ? ଦେଖିବ ଆଅ, ମୁଁ ତ ଗରବ କରି କହୁଚ—ଲକ୍ଷିଆ ବାପ ଘର ସଙ୍ଗା ଲୋକ ଏ ଖଣ୍ଡକରେ ନାହାନ୍ତି । ଆମର ମହାଜନୀ କାରବାର ହଉ, ଆମେ ଏଡ଼ିକି ଟଣିଚପା ନୋହୁଁ ।"

ଚମ୍ପା ଓ ଶାମାବୋଉ ମୁହଁରେ କିଛି କହିଲେ ନାହିଁ, ମାତ୍ର ମନେ ମନେ ଭାବିଲେ, ସୁଧ ଖାଇ ଖାଇ ତମ ଦିନ ଗଲା, ପୁଣି ସଙ୍ଗା !

ଏଣେ ରସକଳା ଓ ଇନ୍ଦୁ ଘରେ ବସି ଚିଠାଦେଣା କାଟି ଭୋଜନରେ ବ୍ୟସ୍ତ । ଇତ୍ୟବସରରେ ଆମ୍ଭେମାନେ ତାଙ୍କ ଘରଟି ଦେଖିନେବା । ଗାଁ ମଝି ଦାଣ୍ଡକୁ ଘର । ଖୁଲ ଛପର, କିନ୍ତୁ ଭିତରେ ଶକ୍ତ ମଉଡ଼ମଗ ଆଠ ଚନ ବଖରା । ମଝିରେ ବଡ଼ ଅଗଣା, ବାଡ଼ ପଟକୁ ଦି ସରୁ ଗ୍ରେଟ ଗ୍ରେଟ ନାହାଖୁଲିଆ ଘର ଗୃହ ବଖରା । ଗୋଟିକରେ ଗାଈ ଗୋରୁ ରହନ୍ତି, ଆଉଟି ଢେଙ୍କିଶାଳ । ତା କଡ ଘରଟି ରୋଷେଇଶାଳ । ଆଉ ଆରପାଖ ଘର ନାନା ଆଳମାଳକାରେ ପୂର୍ଣ୍ଣ । ଅଗଣା ମଝିରେ ଗୋଟିଏ ସୁନ୍ଦର ହଳଦା ଗଛ,—ଫଳରେ ନଇଁ ପଡ଼ିଛି । ପିଡ଼ା ଓଳତଳେ ମନ୍ଦା କରି ଲାଉ, କଖାରୁ ମଞ୍ଚି ପୋତା ହୋଇଛି । ରସକଳା ଶାଗ ବଡ଼ ସୁଖ ପାଏ । ରୋଷେଇଶାଳ ପିଡ଼ାରେ ପୋଇଲଟା ଗହଳ ହୋଇ ମାଡ଼ିଛି । ଅଗଣା ପାଖକେ ମରିଚ ଚାଳ, ପାଖକେ ବାଇଗଣ ଚାଳ ଲୁଆ ସରିଲାଣି । ଖଡ଼ା ଲେଉଟିଆ, କୋଶଳା ପହାଳ ବାଉଆଡ଼େ ହଣାମରା ହେଲାଣି ।

## ରଘୁ ଅରକ୍ଷିତ ।

ଘରେ ସ୍ୱାମୀ ବାଳକ ଛଡ଼ା ଆଉ କେହି ଦାସ ଦାସୀ ନାହାନ୍ତି । ରସକଳା ଏକା ଏକା ସବୁ ପାଇଟି କରେ । ତାକୁ ଶୋଇବାର, ବସିବାର କେହି କେବେ ଦେଖି ନାହିଁ—ବଡ଼ି ଅନ୍ଧାରୁ ଉଠି ରାତି ନଅଟାଯାଏ କାମରେ ଲାଗିଥାଏ । ଦଣ୍ଡାବଢ଼ାଠାରୁ ଆରମ୍ଭ କରି ଢେଙ୍କିକୁଟା, ଧାନଉଁସା ପର୍ଯ୍ୟନ୍ତ ସେ ଅନାୟାସରେ କରି ପାରେ ।

ଅଳ୍ପଭାଷିଣୀ, ସଦା ପ୍ରଫୁଲ୍ଲମୁଖୀ ରସକଳା ରଘୁନାଥକୁ ସନ୍ତାନାଧିକ ସ୍ନେହ କରେ । ରଘୁ ଦୁଇ ବର୍ଷ ବୟସରୁ ପିତୃହୀନ ପ୍ରାୟ ଏକ ବର୍ଷ ହେଲା ଏକମାତ୍ର ଭଗିନୀ ରତ୍ନମଣି ଏବଂ ମାତା ସୁଲକ୍ଷଣା ବିସୂଚିକାରେ କାଳଗ୍ରାସରେ ପତିତ ହୋଇଅଛନ୍ତି । ଗ୍ରାମର ଲୋକେ ତାକୁ ବେଶ୍ ଭଲ ପାଆନ୍ତି, କାରଣ ସେ ବଡ଼ ବାଧ୍ୟ—ଯେ ଯେଉଁ କାମଟି କହେ, ଲାଗି ପଡ଼ି କରେ । ଗାଁ ପିଲାଙ୍କୁ କାଖେଇ କାଖେଇ ତା ଦିନ ଯାଏ; ପୁଣି ଗାଁ ଚାହାଳୀରେ ବାସୁ ଅବଧାନ କତରେ ସେ ଅନେକ ପାଠ ପଢ଼ିଛି । ତାହାର ପ୍ରଖର ସ୍ମୃତିଶକ୍ତିବଳରେ ସେ ନାନା ଛାନ୍ଦଗୀତ ମୁଖସ୍ଥ କରି ମଧୁର କଣ୍ଠରେ ଗାଏ, କିନ୍ତୁ ତାକୁ ସବୁଠାରୁ ବେଶି ସୁଖ ପାଏ ତାହାର ଖୁଡ଼ୀ ରସକଳା ।

ତାହାର ଖୁଡ଼ତା ହୃଷୀକେଶ ବର୍ଷକେ ଦୁଇ ଥର ଘରକୁ ଆସେ—ଥରେ ଧାନରୁଆବେଳେ, ଥରେ ଅମଳବେଳେ । କଟକର ଶେଖର ଚଉଧୁରୀଙ୍କର ସେ ଜଣେ ବଡ଼ ଗୁମାସ୍ତା ।



# ଦ୍ୱିତୀୟ ଅଧ୍ୟାୟ ।



ମହାନଦୀକୂଳକୁ ଯେଉଁ ବଡ଼ କାଠଗୋଲାଟି ଦିଶୁଛି, ତାହା ଶ୍ରୀ ଚନ୍ଦ୍ରଶେଖର ଚୌଧୁରିଙ୍କର । ଗୋଲାକୁ ଲାଗି ସଡ଼କ ସେ ପାଖର ବଡ଼ ଆମ୍ବତୋଟା ପଛକୁ ଯେଉଁ ସୁନ୍ଦର ଏକତଳବିଶିଷ୍ଟ ଚଉସରିଆ କୋଠାଟି, ତାହା ତାଙ୍କର ବାସଭବନ; ଦୂରଛଡ଼ା ଖଣ୍ଡିକେତେ ଘର ଗୁମାସ୍ତାମାନଙ୍କର ବାସଗୃହ, ବଢ଼େଇଶାଳ, ଧାନଗୋଦାମ ଓ ଗୋରୁ ଗୁହାଳ ।

ଜମିର ଆୟତନ ଓ କାରବାରର ବିସ୍ତାର ଦେଖିଲେ ଚୌଧୁରିଏ ଯେ ଊଣା ଲୋକ ନୁହନ୍ତି, ଏହା ସହଜରେ ବୁଝାଯାଏ । ଲୋକେ କହନ୍ତି, ଚୌଧୁରିଏ ଲକ୍ଷପତି---ଜମିଦାରୀ କରି ଗଲେଣି । ଦେଶରେ ତାଙ୍କର ଗୁଆ, ନଡ଼ିଆମାଳ, ପୋଲଙ୍ଗ, କରଞ୍ଜ ତୋଟାମାନ ଅଛି ।

ଆଜି ତାଙ୍କ ଘରେ ମହୋତ୍ସବ । କୁମାରପୂର୍ଣ୍ଣିମାରେ କୁମାର-କୁମାରୀଙ୍କର ଆନନ୍ଦ-ସମ୍ମେଳନ ।

ଆକାଶରେ ରୁପାଥାଳିଟି ପରି ବଡ଼ ଉଜ୍ଜ୍ୱଳ ଜହ୍ନ ଉଇଁଛି—ସନ୍ଧ୍ୟା ଛ ଘଡ଼ି ହେଲାଣି, ମାତ୍ର ଆଜି ଅନ୍ଧାର ଲେଶମାତ୍ର ନାହିଁ । ଚୌଧୁରିଙ୍କ ବାସଭବନର ବଡ଼ ଆମ୍ବତୋଟା ଉପରେ ସଡ଼କ ସେ ପାରି ମହାନଦୀର ବିସ୍ତାରିତ ଜଳବକ୍ଷ ଉପରେ ଚନ୍ଦ୍ର ଆଲୁଅ ନାଚୁଛି । ନାଉରିମାନେ କୂଳକୁ ନା' ଭିଡ଼ିଲେଣି । ଅନେକ ଯୁବକ ଓ ବାବୁମାନେ ସଡ଼କରେ ସଞ୍ଜ ପବନ ଖାଇ ବୁଲୁଅଛନ୍ତି । ଆଜି କୋଜାଗର ପୂର୍ଣ୍ଣିମା— ଆନନ୍ଦର ଚୂଡ଼ାନ୍ତ ଲୀଳା । ଆକାଶରେ ଆନନ୍ଦର ଖେଳ —ତାରାମାନେ ଜହ୍ନ ଆଲୁଅରେ ଲୁଚକାଳି ଖେଳୁଛନ୍ତି; ଖଣ୍ଡ ଖଣ୍ଡ ଧଳା ମେଘ ଲୁଆଖୁଦିଟିମାନ ପରି ଆକାଶରେ ପଡ଼ି ହୋଇଛି, ତାହାର ଭିତରେ ତାରାଗୁଡ଼ିକ ଲୁଚି ଲୁଚି ଖେଳୁଛନ୍ତି; ଆଉ ଚନ୍ଦ୍ର ଖେଳୁଛି ନଦୀ ସଙ୍ଗରେ । ମହାନଦୀଟି ବଡ଼ ଆରସି ପରି ଦିଶୁଛି । ଜ୍ୟୋତ୍ସ୍ନାରେ ଜଳହିଲ୍ଲୋଳ ଚକଚକ ଜକଜକ, ଠାଏ ଠାଏ ତାରା ଆଲୁଅ, ଠାଏ ଠାଏ ଭଉଁରିଚକ; ଅଇନା କାଚ ଉପରେ ତାଳ ଫୁଲ ପଡ଼ି ଚକ ପରି ଦିଶୁଛି; ଆଉ ଦୁଇ କୂଳର ଗଛପତ୍ର, ଦୂର ପର୍ବତ-ରେଖା, ଦୂର କୁଡ଼ିଆମାଳ ଓ ସଞ୍ଜ-ଦୀପର ଦୂରଗତ ସୁବର୍ଣ୍ଣ-ରଶ୍ମି ଅଇନାର ବଉଳ ବେଢ଼ଣୀ ! ସେ ଦର୍ପଣଟିରେ ମୁହଁ ଦେଖିବାକୁ ବ୍ୟସ୍ତ ଚନ୍ଦ୍ର ଆଉ ତାରାମାନେ । ଚନ୍ଦ୍ର ନିଜର ପରମ ସୁନ୍ଦର ରୂପ ଦେଖି ଆନନ୍ଦରେ ଆତ୍ମହରା । ସବୁ ଅମୃତ ଠୁଳ କରି ଦେବତାଏ ନାମ ଦେଲେ ଅମୃତାଂଶୁ ସୁଧାକର--ଆଉ ଆଜି

ସତକୁ ସତ ସେ ଦୃଶ୍ୟ ସୁଧାମୟ ! ସମଗ୍ର ବିଶ୍ୱରେ ଅଳ୍ପ ତା ଠାରୁ ସୁନ୍ଦର କିଏ ? ସେ ସୌନ୍ଦର୍ଯ୍ୟ-ରାଜ୍ୟର ଛତ୍ରପତି ସମ୍ରାଟ୍ ଆଜି ! କତରେ କ୍ଷୁଦ୍ର ଜହ୍ନିଫୁଲ ପୁଞ୍ଜ ତାରାଗୁଡ଼ିକ ବଡ଼ ମଳିନ, ବଡ଼ ଲଜ୍ଜାକୁଳ—ନିଜ ଲକାଣ୍ଠି ବେଶକୁ ମେଘ-ଓଢ଼ଣା ଆଢ଼ୁଆଳରେ ଲୁଚାଇବାରେ ତତ୍ପର ।

ଆନନ୍ଦରେ ମତ୍ତ କୁମାର କୁମାରୀମାନେ ! ଆମ୍ବତୋଟା ପଛଗଦାଳ ପର୍ଯ୍ୟନ୍ତ ସେମାନଙ୍କର ଆନନ୍ଦ-କୋଳାହଳ ଶୁଭୁଛି । ଆଳି ସଜାଡ଼ି ଚନ୍ଦ୍ରକୁ ବନ୍ଦାପନା କରି ପିଲାମାନେ ଗାଇ ଉଠିଲେ :—

‘ଜହ୍ନ ରେ ଜହ୍ନ ! ନିର୍ମଳ ଜହ୍ନ !
ଏହି ଜହ୍ନ ସଙ୍ଗେ ଖେଳିବାକୁ ମନ ।
ଜହ୍ନ ଯେ ଆମର ମାଆର ଭାଇ,
ଘାଟ ଗୁଡ଼ି ଦିଅ ଘାଟୁଆ ଭାଇ ।
ମୁଁ ତ ଯିବି ଷୋଳଶୀ ଘାଟ,
ଷୋଳଶୀ ଘାଟରେ ଟିକି ବୋଇତ,
ଟିକି ବୋଇତ କି ମୁନ୍ଦି ବୋଇତ,
ଭାଳି ପୋହଳାକୁ ବାଛି ଆଣିବି, ରାଜକୁମାରୀକି ଗଛି ଆଣିବି !

ତହିଁରେ ଚୌଧୁରୀଙ୍କ ସାନ ଝିଅ ସୀତା ଯୋଗ ଦେଲା—

‘ଆରେ ଜହ୍ନ ମାମୁଁ ଶରଦ ଶଶୀ,
ମୋ କାହ୍ନୁ ହାତରେ ପଡ଼ରେ ଖସି ।’

ପିଲାମାନଙ୍କ ନିର୍ମଳ ଆନନ୍ଦରେ ସର୍ବାନ୍ତଃକରଣରେ ଯୋଗ ଦେଇ, ସେମାନଙ୍କୁ ପରିତୋଷ କରି ମିଠେଇ, ଭୁଜା, ଝୁଞ୍ଜୁଡ଼ା ଓ ନଡ଼ିଆ ଖଣ୍ଡ ବାଣ୍ଟି ବାଣ୍ଟି ଚୌଧୁରୀଙ୍କ ଗୃହିଣୀ ସରସ୍ୱତୀ ଭିତର ଅଗଣାକୁ ଗଲେ । ତାଙ୍କୁ ଦେଖି ପ୍ରଫୁଲ୍ଲ ଚିତ୍ତରେ ଓ ଆନନ୍ଦସ୍ୱରରେ ପିତେଇ ନାମୀ ଗାଇ ଉଠିଲା—

‘ବନ୍ଦାପନା ଆଳୀ ସଜାଡ଼ି ସଙ୍ଗାତେ
ଆସ ଲୋ ଖେଳିବା ଖେଳ,
ଫୁଲସଞ୍ଜବେଳେ କାଳନ୍ଦୀର କୂଳେ
କୋଜାଗର ନିଶି ମେଳ ।’

ପିତେଇ ନାମୀର ଗୀତ ଶୁଣି ସରସ୍ୱତୀଙ୍କ ଶିଶୁପୁତ୍ର ‘ବାବୁ’ ଦଉଡ଼ି ଆସିଲା, କହିଲା, ‘ନାନି ! ଆଉ ଥରେ ଗା, ତୋର ଭାରି ସୁନ୍ଦର ସ୍ୱର ।’ ବାବୁର କଥା ଶେଷ ହୋଇ ନାହିଁ, ହଠାତ୍ ଅପରିଚିତ ବାଳକଟିଏ ଭିତର ଅଗଣାକୁ

ପଶି ଆସିଲା । ନଉଆ 'ହାଁ' 'ହାଁ' ପାଟି କରି ଦଉଡ଼ିଗଲା । ସରସ୍ୱତୀ ରନ୍ଧାଘର ଦୁଆରମୁହଁରେ ଛିଡ଼ା ହୋଇଥିଲେ । 'କଣ ହେଲା', 'କଣ ହେଲା' କହି ସେ ମଧ୍ୟ ସେଠାକୁ ଚାଲି ଆସିଲେ । ସୀତା ଓ ବାବୁ ମା ପାଟି ଶୁଣି ଧାଇଁଗଲେ । କାହାକୁ ନ କହି ପିଲାଟି ଘର ଭିତରକୁ ପଶି ଆସିଛି । ବେଶଭୂଷାରୁ ସେ ନିତାନ୍ତ ନିଃସ୍ୱ ଗାଉଁଲି ପିଲା ପରି ଦିଶୁଛି, କିନ୍ତୁ କାନ୍ଧରେ ପଇତା । ସରସ୍ୱତୀ ବୁଝିଲେ, ସେ ବ୍ରାହ୍ମଣସନ୍ତାନ । ହଠାତ୍ ଚୋର ପରି ଧରା ପଡ଼ିବାରୁ ବାଳକ ଚୋର ପରି ଥରୁଥାଏ । ସରସ୍ୱତୀ ନଉଆକୁ ତାହାର ହାତ ଛାଡ଼ି ଦେବାକୁ କହିଲେ; ଭାବିଲେ, ପିଲାଟି ପଳାଇବ । କିନ୍ତୁ ସେ ମୁହଁ ଟେକି ତାଙ୍କ ମୁହଁକୁ ଚାହିଁଲା । ସେ ଦେଖିଲେ, ପିଲାଟି ଅନବଦ୍ୟସୁନ୍ଦର ! ତାହାର ବଡ଼ ବଡ଼ ଉଜ୍ଜ୍ୱଳ ନୀଳ ଆଖି, ଚମ୍ପାଫୁଲ ପରି ବର୍ଣ୍ଣ, ମୁଖର ଅପୂର୍ବ ଲାଳିତ୍ୟରେ ତାଙ୍କର ମାତୃହୃଦୟ ମୁଗ୍ଧ ହେଲା । ପିଲାଟି ମଧ୍ୟ ତାଙ୍କର ମୁଖମଣ୍ଡଳରେ କଣ ଦେଖିଲା କେଜାଣି, ତାହାର ଭୟ ଛାଡ଼ିଗଲା—ସେ ଅପେକ୍ଷାକୃତ ଦୃଢ଼ ହୋଇ ଛିଡ଼ା ହେଲା । ସରସ୍ୱତୀ ସଦୟ ଭାବରେ ପଚାରିଲେ—"ହଇରେ, ତୋ ନାଁ କଣ ?"

"ମୋ ନାଁ ରଘୁ, ମୁଁ ହରିକୁଷୀ କକେଇ ବଖାରୁ ଅଇଲି । କକେଇ ମତେ ପଠେଇ ଦେଲା ।"

"ଆମ ଗୁମାସ୍ତା ! ତୁ ତା ପୁଅ ?"

"ପୁତୁରା ।"

"ତୁ କଣ ନୂଆ କଟକ ଆସିଚୁ ?"

"ହଁ ।"

"ତୋର ବାପ ମା ଅଛନ୍ତି ?"

"ବୋଉ ଆଉ ଉଡମା ନାମା ମରିଗଲେ, ମୁଁ ଖୁଡ଼ୀ କତିରେ ଥିଲି । କକେଇ ସଙ୍ଗେ କଟକ ବାହାରି ଅଇଲି ।"

"ତୋ ଖୁଡ଼ୀ, ଖୁଡ଼ିତା ତତେ ସୁଖ ପାନ୍ତି ?"

"ହଁ ।"

"ଏଠି କଣ କରୁ ?"

"ଗଣ୍ଡେ ରେଷେଇ କରେଁ, ଆଉ କିଛି ନାହିଁ ।"

ସରସ୍ୱତୀ ବାଳକଟିର ସରଳତାରେ ମୁଗ୍ଧ ହୋଇ ତାକୁ ଅନେକ କଥା ପଚାରିଲେ । ବାଳକଟି ଅନାଥ ବ୍ରାହ୍ମଣସନ୍ତାନ, ଏ କଥା ଭାବି ତାଙ୍କର କରୁଣା ଉଚ୍ଛୁଳି ଉଠିଲା । ପାଖରେ ବସାଇ ସେ ତାହାର ପିତା ମାତା ବିଷୟ ସବୁ

ଶୁଣିଲେ ଏବଂ ତାକୁ ନୂଆ ଲୁଗାଟିଏ ପିନ୍ଧାଇ ଅତି ଯତ୍ନରେ ଭୋଜନ କରାଇ ଗଲାବେଳେ କହିଲେ, "ପାଖରେ ତ ଅଛୁ, ଥରେ ଅଧେ ଆସିବୁ ।"

ସୀତା ଓ ବାବୁ ମା କଡରେ ବସି ସବୁ ଶୁଣିଲେ । ରଘୁ ହୁରୁଷୀ ଗୁମାସ୍ତାର ପୁରୁଷ; ପାଖରେ ଅଛି । ନଇକୂଳରେ ତାଙ୍କ ଖେଳସଙ୍ଗୀ କେହି ନାହିଁ । ଏଥର ନିତି ଆସିବ, ସେମାନେ କେତେ ଖେଳ ଖେଳିବେ—ଏହା ଭାବି ଆନନ୍ଦ ହେଲେ । ରଘୁ ଗଲାବେଳେ ବାବୁ କହିଲା—"କାଲି ଆସିବୁ, ଆମର ଖେଳିବା ।" ସୀତା ମଧ୍ୟ ଅତି ଶରଧାରେ ଦରଫିଟା ପାନଖିଲଟିଏ ଦେଇ କହିଲା—"ତୁ ନଟେ କାଲି ଆସିବୁ, ଆମର ଲୁଚକାଳି ଖେଳିବା, ନଇଲେ ଆମେ ତୋ ଘରକୁ ଯିବା ।"

ସୀତା ଓ ବାବୁର ଏତେ ସ୍ନେହ ! ରଘୁନାଥ ତାହାହିଁ ଭାବୁ ଭାବୁ ଘରକୁ ଗଲା । କକେଇ ସହିତ କଥକ ଆସିଲା ଦିନୁଁ ତା କପାଳ ଫାଟିଛି । ରନ୍ଧାବଢ଼ା, ବାସନ ମଜା, ଘରର ଅନ୍ୟାନ୍ୟ ସବୁ ପାଇଟି ତାକୁ ଏକୁଟିଆ କରିବାକୁ ପଡ଼େ । ସେଥିରେ ପୁଣି କକେଇର ନିତି କଟୁ କଥା, ନିତି ଅସନ୍ତୋଷ ଏବଂ ଉତ୍ତମ ମଧ୍ୟମ ପ୍ରହାର । ରଘୁର ଖବର କିଏ ବୁଝେ ? ଗଣ୍ଡାଏ ଭାତ ତୋରାଣି କାହିଁ ଦିନ ରାତିରେ ଦୁଇ ଥର ହେଲେ ବହୁତ, ତହିଁରେ ପୁଣି କକେଇର ସବୁ ପଦାର୍ଥକୁ ବଡ଼ ଆଖି—ତେଲ ବେଶି ସରିବ ନାହିଁ, ସୋରିଷ ତେଲ ବଡ଼ ଦାମ୍—ସେର ଆଠଣା, ଦଶଣା । ରଘୁ ନୁଖୁରା ଗାଧାଏ, ପାନଗୁଣ୍ଡି ମହରଗ—ଛୁଇଁବାର ସାଧ ନାହିଁ, ଲୁଗା ବୋଇଲେ ଦୁଇଖଣ୍ଡି ମୋଟ ଗାମୁଛା—ଧୋଇ ଶୁଖାଇ ପିନ୍ଧେ, ଏଠି ତାର ଯାଠର ନାଁ ଗାଁ ନାହିଁ । କକେଇର ଅତ୍ୟାଗୃହରେ ହାତ ପିଠିରେ ଲୁହ ପୋଛୁ ପୋଛୁ ତା ଦିନ ଯାଉଛି । ବାଳକ ଦିନ ରାତି ଖୁଡ଼ୀକୁ ମନେ କରେ । ଖୁଡ଼ୀର ସ୍ନେହ ଓ ଖୁଡୁତାର ବ୍ୟବହାର ମଧ୍ୟରେ ଯେ କେତେ [illegible]ଯୋଜନ ବ୍ୟବଧାନ, ତାହା ରଘୁନାଥ ବୁଝିଛି ।

ଜହ୍ନ ଆଲୁଅ ପଡ଼ିଥିବା ଦାଣ୍ଡରେ ବୁଲି ବୁଲି ସରସ୍ୱତୀର ପ୍ରେମବ୍ୟବହାର ମନେ କରି ବାଳକର ହୃଦୟରେ ବହୁଦିନର ପୁରୁଣା, ଅଥଚ ଚିର ନୂତନ ଗୋଟିଏ ମୁଖଛବି ଜାଗ୍ରତ ହେଲା—ସେ ତାର ଜନନୀ । ଆଜି ଯଦି ତାର ମା ଥାନ୍ତା, ସେ ଏପରି ଦୀନହୀନ ହୋଇ, କକେଇର ଗାଳି ମାଡ଼ ଖାଇ କଷ୍ଟରେ ପଡ଼ିଥାନ୍ତା ? ଯାହା ଦେହରେ ଟିକିଏ ଧୂଳି ଲାଗିଲେ ମା ପଣତ କାନିରେ ପୋଛୁଥିଲା, ଯାହା ସକାଶେ ମା ସ୍ୱର ତାର ପାଇଟି କରି ବୁଲୁଥିଲା, ସେହି ରଘୁର ସବୁ ମାୟା କାଟି ମା କେଉଁଆଡ଼େ ଅଛି ? ଖୁଡ଼ୀ କହେ, ତା ମା ସ୍ୱର୍ଗ ଯାଇଛି । ଏଡ଼େ ନିର୍ଦ୍ଦୟୀ ତା ମା ! କିଣ ଦିନେ ରଘୁକୁ ମନେ ପକାଏ ନାହିଁ ? ତାର ଏତେ କଷ୍ଟ ହେଲାଣି, ଏତେ ଦୁଃଖ ହେଲାଣି—ସେ ଦିନେ ଆସି ଦେଖି

ନାହିଁ ! ଆହା, ସେ ତ ମରିଯାଇଛି—ମଲେ ଆଉ ଆସିବ ! ବାଳକ ଆତ୍ମଚିନ୍ତାରେ ଚମକିଲା । ଧୀର ପଦବିକ୍ଷେପରେ ସେ ଆସି ଅନ୍ଧାରୁଆ ପ୍ରକୋଷ୍ଠ ଅଗଣାଟିରେ ପଶିଗଲା । ଘର ଭିତରେ ପଶିବ କଣ,—କକେଇ ଭୀଷଣ ମୂର୍ତ୍ତି ହୋଇ ବାଡ଼ଟିଏ ଘେନି ଦୁଆରେ ଛିଡ଼ା । ସପ୍ ସପ୍ ସପ୍ ପାହାର ବସିଗଲା । ରଘୁନାଥ 'ବୋଉ ଲୋ' କହି କାନ୍ଦି ପିଟି ଆଉଁସି ହୋଇଗଲା ।

"ହଇରେ ଅର୍କିଟ ! ଗତ ଅଧଘଡ଼ିଏ କୁଆଡ଼େ ମରିବାକୁ ଯାଇଥିଲୁ ? ତୁ ଏକା ଭୋଜ ଖାଇ ଯାଇଥିଲୁ, ନା ଗାଁ ଗୋଟିକର ପିଲା ଆସିଥିଲେ ? ବାବୁ, ଗିଳିବାକୁ ଗଲୁ ତ, ଗୋଷ୍ଠେଇଶାଳ ମେଲା କରି ଗଲୁ କିଆଁ ? ତୋ ବାଲେଇ ଦୋପା ପାଇଁ କଣ ଭାତ ତିଅଣ ସଜାଡ଼ି ଥୋଇଥିଲୁ ? ଅଲକ୍ଷଣା, ମୁଁ ହାଡ଼ ଭାଙ୍ଗି ପୋଷିବାକୁ ଘରେ ବସି ନବରଙ୍ଗ ! ସୁଆଗ ଛଡ଼ାଇ ଦେବି ଯେ । ମୁଁ ତୋ ଖୁଡ଼ୀ ଆକୁଳେଇ ନୁହେଁ—ମୁଁ ହରୁଷିଆ, ଜାଣିଥା । ହାଡ ଭାଙ୍ଗି ଚୂନା କରିଦେବି ।"

ରଘୁ କଣ ବା କହିବ ! ସତକୁ ସତ ସେ ଭୁଲରେ ଗୋଷ୍ଠେଇଶାଳ ମେଲା କରି ଯାଇଥିଲା । ବିଚାର ବାଘରଙ୍ଗିଆ ଭୂଆ ଉପରେ ତାର କ୍ରୋଧାଗ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ସେ ତ ସବୁ ସର୍ବନାଶର ମୂଳ । ମନେ ମନେ ତାକୁ ସହସ୍ର ଗାଳି ଦେଇ ପିଣ୍ଡାରେ ବସି କାନ୍ଦିବାକୁ ଲାଗିଲା । କକେଇ ମନ ଇଚ୍ଛା ବକି ବକି ଶୋଇବା ଘରକୁ ଗଲା । ରଘୁ ମଧ୍ୟ ତୁନି ତୁନି ପଛେ ପଛେ ଗଲା । ଦୀପ ଆଲୁଅରେ ଏତେବେଳକୁ ହରୁଷିଆର ଦୃଷ୍ଟି ପଡ଼ିଲା—ବାଃ, ରଘୁ ତ ବେଶ୍ ନାଲିଧଡ଼ି ପାଟଳ ଧୋତିଟିଏ ପିନ୍ଧି ଆସିଛି । ଏ ପୁରସ୍କାର ଯେ କାହାର ଦତ୍ତ, ତାହା ବୁଝିବାକୁ ବିଳମ୍ବ ହେଲା ନାହିଁ । ତାହାର ରୁକ୍ଷ ମୁଖ ହଠାତ୍ ପ୍ରସନ୍ନ ହେଲା । ସେ ରଘୁକୁ ପାଖକୁ ଟାଣି ଆଣି ପିଠି ଆଉଁସି ଦେଲା । କୋମଳ ସ୍ୱରରେ କହିଲା, "ହଉ, ପିଲାଲୋକ, ଦୋଷ କଲୁ—ମାଡ଼ ଖାଇଲୁ । ଦେ ଦେ, ମୁହଁ ଧୋଇ ଯା ଶୋ ଯା । ଆଚ୍ଛା, ପୁଅ ! ତୋତେ ସେ ଲୁଗାଖଣ୍ଡ କିଏ ଦେଲା ?"

କକେଇର ସ୍ନେହରେ ରଘୁ ମାଡ଼ ଦୁଃଖ ଭୁଲିଗଲା । ଲୁଗାଖଣ୍ଡି କିଏ ଦେଇଥିଲା, ଚଉଧୁରିଙ୍କ ସ୍ତ୍ରୀ କିପରି ଆଦର କରିଥିଲେ, ତାହା କକେଇ ଆଗରେ ସବିସ୍ତାରେ ବର୍ଣ୍ଣନା କଲା ପରେ କହିଲା—"ସାଆନ୍ତାଣୀ, ବାବୁ, ଆଉ ସୀତା କହିଛନ୍ତି ମଝିରେ ମଝିରେ ଯିବାକୁ ।" କକେଇ ମଧ୍ୟ ସହାନୁଭୂତି ପ୍ରକାଶ କରି କହିଲା—"ହଁ, ସେ ବଡ଼ଲୋକ, ତାଙ୍କ ଘରକୁ ଯିବୁ ନାହିଁ ତ, ଆଉ କାହା ଘରକୁ ଯିବୁ । ହଉ ଦେ,—ଲୁଗାଖଣ୍ଡ ମଇଳା ହୋଇଯିବ, ପେଡ଼ିରେ ରଖିଦିଏଁ ।" କକେଇର କଥାରେ ରଘୁ ଲୁଗାଟି ପାଲଟି ଦେଲା । କକେଇ ନେଇ ନିଜ ସିନ୍ଦୁକରେ ବନ୍ଦ କଲା ।

ରଘୁର ଆଉ ଦୁଃଖ ନାହିଁ । ସାଆନ୍ତାଣୀ, ବାବୁ ଓ ସୀତା କଥା ଭାବୁ ଭାବୁ ସେ ଶୋଇବାକୁ ଗଲା । ଗାଁରୁ ଆସିଲା ପରେ ତାକୁ ସ୍ନେହ କରି କେହି ପଦେ କହି ନାହାନ୍ତି । ସରସ୍ୱତୀଙ୍କ ଆଦରରେ ସେ ଆଜି ପୂର୍ଣ୍ଣପ୍ରାଣ । ଆଉ ବାବୁ ଓ ସୀତା, ସେମାନଙ୍କୁ ସ୍ୱପ୍ନରେ ମୂକା ରଘୁ ଦେଖିଲା । ସେ ଦରିଦ୍ର, ସେମାନେ ବଡ଼ଲୋକ, ଏହା ତାହାର ମନେ ହେଲା ନାହିଁ, କିନ୍ତୁ ସେମାନେ ତାହାର ପ୍ରିୟ, ସେମାନେ ତାହାର ଆତ୍ମୀୟ—ଏତିକି ଭାବୁ ଭାବୁ ସୁଖରେ ନିଦ୍ରା ଗଲା ।

ସଞ୍ଜବେଳ—ଆମ୍ବତୋଟା ପଛପଟେ ସୂର୍ଯ୍ୟ ବୁଡ଼ିଯାଉଛି । ଅସ୍ତକାଳୀନ କିରଣରାଗରେ ଖଣ୍ଡ ଖଣ୍ଡ ମେଘଗୁଡ଼ିକ ଚକବକ—ଫାଳକେ ଅନ୍ଧାର, ଫାଳକେ ଆଲୁଅ । ଆକାଶର ଗୋଟିଏ ପ୍ରାନ୍ତରେ ବଡ଼ ସଞ୍ଜତାରାଟି ଚକ୍‌ଚକ୍ ହେଉଛି । ସୀତା ଥରେ ତାକୁ ଅନାଇଲା; ଦେଖିଲା, ଆକାଶରେ ପଲେ ପଲେ ବାଦୁଡ଼ି ଉଡ଼ି ଯାଉଛନ୍ତି । ଘରଚଟିଗୁଡ଼ିକ ଅନ୍ଧାର କୋଠରିରୁ ବାହାରିଲେ ପରା ତାଙ୍କୁ ରାତିରେ ଦିଶେ ! ଦାଣ୍ଡରେ ପଲ ପଲ ଗୋରୁ ଆସୁଛନ୍ତି । ମଙ୍ଗୁଳିଆ ବାଛୁରୀଟା ତ ଦିଶୁ ନାହିଁ । ପୁଣି ସେ ଅନାଇଲା, ଝରକା ଭିତରୁ ଭଲକରି ଦିଶିଲା ନାହିଁ—ରଘୁ କକେଇର କୁଡ଼ିଆଘର । ଦୃଷ୍ଟି ପଡ଼ିଲା ଯାଇଁ ପୋଖରୀ ଉପରେ । ଫୁଟି ଆସୁଥିବା କଇଁ-କଢ଼ଟିକୁ ଅନାଇଁ ସୀତାର ଆଖି ଆନନ୍ଦରେ ଉଜ୍ଜ୍ୱଳ ହୋଇ ଉଠିଲା । କଢ଼ଟି ଫୁଟୁ, ସୀତା ପହଁରି ଯାଇଁ ତୋଳି ଆଣିବ । ତୋଳି ଆଣି ଦବ କାହାକୁ ? ବୋଉକୁ, ବାବୁକୁ, ନା ପେଟେଇ ମାମାଙ୍କୁ ? ଆଉ ରଘୁକୁ ? ରଘୁକଥା ମନେ କରି ସୀତାର କ୍ଷୁଦ୍ର ହୃଦୟଟି ଆନନ୍ଦରେ ପୂର୍ଣ୍ଣ ହେଲା । ଆଜି ରଘୁ ଆସିବ—ସଞ୍ଜ ଆଗରୁ ଆସିବ କହିଛି; ଆଜି କେତେ ଗୀତ ଗାଇବ—କି ସୁନ୍ଦର ରଘୁର ସ୍ୱର ! ଏପରି ସ୍ୱର ତ ସୀତା କାହାରି ଶୁଣି ନାହିଁ ।

ଆଗୋ କଷି କାକୁଡ଼ି, ମୁଁ ତ ଯାଉଛି ଛାଡ଼ି,
ମନେ କରୁଥିବ ମତେ ଘଡ଼ିକ ଘଡ଼ି ।

ରଘୁଠାରୁ ଶିକ୍ଷା କରିଥିବା ଗୀତପଦକ ଗୁଣୁ ଗୁଣୁ ସ୍ୱରରେ ଗାଇ ଗାଇ ସୀତା କେତେ କଥା ମନେ କରି ପକାଇଲା । ରଘୁ ଭଲ ତାଙ୍କ ଘରେ ଥିଲା—ସେ, ବାବୁ ଦୁହେଁ ଏକାଠି ପଢ଼ନ୍ତେ, ଏକାଠି ଖେଳନ୍ତେ, ଏକାଠି ଗୀତ ଗାଆନ୍ତେ; ଅଶୋକ ଚଉତୁରା ମୂଳେ ପୁଚି, ବାଘବକରି, ଲୁଚକାଳି, ଚିକମୂଷି ଇତ୍ୟାଦି କେତେ ଖେଳ ଖେଳି ଖେଳି ତାଙ୍କ ଦିନ ଯାନ୍ତା ! ରଘୁ ଆସୁ, ସୀତା କହିବ । ଆଉ କାହିଁକି ତା କକେଇ ଘରେ ରହିବ ସେ ? ସେଠି ଦିନ ସାରା ଭଙ୍ଗାବଢ଼ା, କାଁସାମଜା ପାଇଟି କରୁଥିବ, ପୁଣି ଗୁଣ୍ଡାଏ ଭାତରେ ଖୁନ୍ଦାଏ । ସୀତାର ସହ୍ୟ ହେଲା ନାହିଁ । ନୀରବରେ ଦୀର୍ଘନିଶ୍ୱାସଟିଏ ପକାଇଲା ।

ତାହାର ରଘୁ ପ୍ରତି ବଡ଼ ଶ୍ରଦ୍ଧା—ବସିଲେ, ଉଠିଲେ, ଖେଳିଲେ, ବୁଲିଲେ, ଶୋଇଥିଲେ, ଖାଉଥିଲେ ରଘୁ ମନେ ପଡ଼େ । ରାତିରେ ସ୍ୱପ୍ନରେ ସୀତା ଦେଖେ, ରଘୁ ତାଙ୍କ ସଙ୍ଗେ ଖେଳୁଛି । ସୀତାର ଏତେ ଯେ ସ୍ନେହ, ତାହା ବ୍ୟର୍ଥ ନୁହେ—ରଘୁ ତାହା ବୁଝେ । ରଘୁ ମଧ୍ୟ ସୀତାକୁ ସେହିପରି ସ୍ନେହ କରେ । ଆହା, ରଘୁର ଭଲ ବାବୁ ପରି ଲୁଗା ଥାନ୍ତା, କୁରୁତା ଥାନ୍ତା,—ରଘୁ ତ ବାବୁଟିଏ ହୋଇଯାନ୍ତା । ପିତେଇ ନାନୀ କହୁଥିଲା—'ରଘୁଟି ରଜାପୁଅ ପରି' । ସତେ କଣ ରଜାପୁଅମାନେ ରଘୁ ପରି ଗୋରା ? ପିତେଇ ନାନୀ କହେ, 'ରଘୁ ଖୁବ ସୁନ୍ଦର । ତାର ଆଖି କଳା ।' ଏହିକ୍ଷଣି ରଘୁ ଆସିବ ପରା ! କିନ୍ତୁ ସନ୍ଧ୍ୟା ହେଲା, ରଘୁ ଆସିଲା ନାହିଁ । ସୀତା ଟିକିଏ ବ୍ୟସ୍ତ ହୋଇ କୋଠା ଛାତ ଉପରକୁ ଗଲା । ଛାତ ଉପରୁ ହୃଷୀକେଶ ଗୁମାସ୍ତାର ଗୃହଘର ଭଲ ଦେଖାଯାଏ । ଦାଣ୍ଡରେ ରଘୁ ବୁଲୁଥିଲେ ସୀତା ଓ ବାବୁ ତାକୁ ଦେଖି ପାରନ୍ତି, ତିନିଜଣ ପରସ୍ପରକୁ ଚାହାଁନ୍ତି । ସେଥିରେ ସେମାନଙ୍କର ପରମ ଆନନ୍ଦ । ଦିନବେଳେ କେତେ ଥର ସେମାନେ ଯାଇ ରଘୁର ରନ୍ଧାଘରେ ବସନ୍ତି । ସୀତା ରଘୁର ଏ କାମ, ସେ କାମ କରିଦିଏ । ରଘୁ ଭାତ ରାନ୍ଧୁଥିଲେ ସୀତା ତିଅଣ ସଜାଡ଼ି ଦିଏ । ବାବୁ ଓ ସେ ଦୁହେଁ ଘରୁ ପାନ, ଭୁଜା, ଉଖୁଡ଼ା ଆଣି ରଘୁ ସଙ୍ଗେ ଭାଗ ହୋଇ ଖାନ୍ତି । ଜହ୍ନରାତିରେ ଜହ୍ନ ଆଲୁଅରେ ରଘୁ ବୁଲୁଥିଲେ ଦୁଇ ଜଣ ତାକୁ ହାତ ଠାରି ଡାକନ୍ତି । ସେଥିରେ ତାଙ୍କର ହରଷ ଉଛୁଳି ଉଠେ । ଧନସନ୍ତାନ ବାବୁ ଓ ସୀତା ଏବଂ ନିର୍ଦ୍ଧନ ରଘୁନାଥ ମଧ୍ୟରେ ଧନ ସକାଶେ କିଛି ବାଧା ବିଘ୍ନ ନାହିଁ—ସ୍ନେହ କତିରେ ଧନ ତୁଚ୍ଛ । ସୀତା, ବାବୁ, ସରସ୍ୱତୀ ଓ ପିତେଇ ନାନୀର ରଘୁ ବଡ଼ ପ୍ରିୟ ।

ସରସ୍ୱତୀ ରଘୁକୁ ପୁତ୍ରାଧିକ ସ୍ନେହ କରନ୍ତି । ଦିନେ ପିତେଇ ନାନୀ କତିରେ ବସି ରଘୁ ମିଷ୍ଟ ସ୍ୱରରେ ଗାଉଥିଲା—'ହନୁ ରେ କାହିଁ ଅଇଲୁ, ଶ୍ରୀରାମ ନାମ ଧଇଲୁ ।' ସରସ୍ୱତୀ ଶୁଣି ପାରି ମଧ୍ୟେ ମଧ୍ୟେ ତାକୁ ଗୀତ ଗାଇବାକୁ ଡାକନ୍ତି । ସେ ମଧ୍ୟ ଭିତର ପିଣ୍ଡାରେ ବସି ମିଷ୍ଟ ସ୍ୱରରେ ନାନାବିଧ ସ୍ତୁତି, ଗୀତ, ଚଉତିଶା ଗାଏ ; ପୁରସ୍କାରସ୍ୱରୂପ ସରସ୍ୱତୀ ତାକୁ ସୁଉକିଟିଏ, ଅଧୁଲିଟିଏ ଦେଇଥାନ୍ତି । ରଘୁ ତାହା ନେଇ କକେଇଙ୍କୁ ଦିଏ । ତଥାପି କିନ୍ତୁ କକେଇ ତାହା ପ୍ରତି ସଦୟ ହେବା ଦୂରେ ଥାଉ, ସାମାନ୍ୟ ଦୋଷରେ ଗାଳି ମାଡ଼ ଦେବାକୁ ଛାଡ଼େ ନାହିଁ । ମାତ୍ର ଚଉଧୁରି ଘରକୁ ଯିବା ପାଇଁ ତାହାର ବାରଣ ନାହିଁ । ସେଠିକାର ଉପୁରି ପଇସାରେ ତାଙ୍କ ବଖାର ବଜାର ଖର୍ଚ୍ଚ ଚଳିଯାଏ ।

ସୀତା ଛାତ ଉପରେ ବୁଲି ବୁଲି ଅନ୍ଧାର ହୋଇଗଲା, ମାତ୍ର ରଘୁର ଦେଖା ନାହିଁ । ଅନ୍ୟ ଦିନ ଏତେବେଳକୁ ସେ ହସି ହସି ଆସୁଥାଏ, ଆଜି କାହିଁକି ଆସିଲା ନାହିଁ ? ନୟଣ ଟଳରେ ଝାବୁ ଝାବୁ, ଦଣ୍ଡେ ଘଡ଼ିଏ ଚାହିଁ ଚାହିଁ ସୀତା

ତଳକୁ ଓହ୍ଲାଇ ଚଳା । ତାହାର ଅଜ ବଡ଼ ମନଦୁଃଖ, କିନ୍ତୁ ତାହାର କାରଣ କଣ, ସେ ବୁଝିପାରୁ ନାହିଁ । ତଥାପି ରଘୁ ଉପରେ ତାହାର ଆଜ ବଡ଼ ଅଭିମାନ— ରଘୁ ଆସୁ, ସେ ତାକୁ କେତେ ଗାଳି ଦେବ, କେତେ ବୁଝିବ, ଆଉ କଥା କହିବ ନାହିଁ । ଭାବୁ ଭାବୁ ସୀତା ତଳକୁ ଗଲା । ଗୋଟିଏ ନିଗଣ ଘାଘନିଶ୍ୱାସ ତାର କ୍ଷୁଦ୍ର ହୃଦୟରୁ ଉତ୍ଥିତ ହୋଇ ସନ୍ଧ୍ୟାର କ୍ରମଶଃ ଘନୀଭୂତ ଅନ୍ଧକାରରାଶି ଭେଦ କରି ବଙ୍କିମ ଚନ୍ଦ୍ର ଓ କୋଟି ତାରା ଖଚିତ ଅସୀମ ନୀଳାମ୍ବରରେ ମିଶିଗଲା ।

ସନ୍ଧ୍ୟାର ଆରତି ପରେ ବାବୁ ଆଉ ସୀତା ଦୁଇ ଜଣ ବାଡ଼ି ପୋଖରୀ କୂଳ ଅଶୋକ ଚଉତରାମୂଳେ । ବାବୁ ଠିଆ ହୋଇ ମନେ ମନେ ଗୁଣୁ ଗୁଣୁ ହେଉଛି । ତାହାର ସ୍ୱର ଭଲ ନୁହେଁ, ମାତ୍ର ଗୀତ ଗାଇବାର ଅଭିଳାଷ ପ୍ରବଳ । ଆଉ ସୀତା ଫୁଲ ତୋଳୁଛି— ବିବିଧ ବର୍ଣ୍ଣର ହରଗୋଲ, କାଣିକଉଡ଼ିଆ, ଆଉ ଦିଓଟି ଗୋଲାପଫୁଲ ଯେନି ଅତି ସୁନ୍ଦର ତୋଡ଼ା ତିଆରି କରୁଛି । ହରଗଉରୀ ଫୁଲଗୁଡ଼ିକ ଅଣ୍ଟିରେ ପୂରାଇ ପାଚଆରେ ତୋଡ଼ାଟି ଥୋଉ ଥୋଉ ହଠାତ୍ କାନରେ ପଶିଲା— 'ବାବୁ' । ଏ ତ ରଘୁର ସ୍ୱର ! ସୀତା ଫୁଲଗୁଡ଼ିକ ଫୋପାଡ଼ି ଠିଆ ହୋଇ ପଡ଼ିଲା । ବାବୁ ଗୀତ ବନ୍ଦ କରି ଉତ୍ତର ଦେଲା— "କିଏ, ରଘୁ ?"

ରଘୁ ଉତ୍ତର ଦେଲା ନାହିଁ; ହଁ ହଁ ହୋଇ କାନ୍ଦୁ କାନ୍ଦୁ ତାଙ୍କ ସମ୍ମୁଖରେ ଠିଆ ହେଲା । ତାହାର ସୁନ୍ଦର ମୁହଁ ଲୁହ ସିଢ଼ାଣିରେ ସୁଡ଼ୁବୁଡ଼ୁ । ସେମାନେ ଚମକି ପଡ଼ିଲେ— "କଣ କି ରେ ରଘୁ ? ଏଁ, କାନ୍ଦୁଛୁ କାହିଁକି ?"

"ଆଉ ବଞ୍ଚିବି ନାହିଁ, ବାବୁ ! ତୋ ଆଗରେ ଏଇ ପୋଖରୀରେ ବୁଡ଼ି ମରିବି । ମୋ ପରି ଅର୍କ୍ଷିତର ବଞ୍ଚିବାଠୁଁ ମରିବା ଭଲ ।" ଏହା କହି କାନ୍ଦି କାନ୍ଦି ରଘୁ ବସି ପଡ଼ିଲା । ଦୁଇ ଧାରରେ ଅବିରଳ ଅଶ୍ରୁ ବହିଲା । ବାବୁ ଓ ସୀତା ସ୍ତମ୍ଭିତ । ରଘୁର ଏ କି ଦୁଃଖ ! ସୀତା ପଣତକାନରେ ତାର ମୁହଁ ପୋଛିବାକୁ ଅଗ୍ରସର ହେଲା । କିନ୍ତୁ ରଘୁ ତାହାର ହାତ ଠେଲି ନିଜ ଲୁଗାରେ ମୁହଁ ପୋଛି ପକାଇଲା । ତାହାର ବିପୁଳ ଶୋକୋଚ୍ଛ୍ୱାସ ଯେପରି ହଠାତ୍ ପ୍ରଶମିତ ହେଲା । ବାବୁ ପଚାରିଲା— "ହଇରେ, କଣ ହେଇଚି କହରେ ? ଆମକୁ କହିବୁ ନାହିଁ ?"

ରଘୁ କିଛିକ୍ଷଣ ନୀରବରେ ଭାବିଲା—ସେ କହିବ—ଲଜ୍ଜାର କଥା ତାଙ୍କୁ କହିବ ? ରଘୁକୁ ନୀରବ ଦେଖି ସୀତା ତା କତିକି ଘୁଞ୍ଚି ଆସି କହିଲା— "କହୁ ନାହୁଁ କାହିଁକି ? କଣ ହେଇଚି ? ତୋତେ କିଏ କେଇ ମାଇଲା ?"

ରଘୁ ଏଥର କହିଁ କହିଁ ହୋଇ କାନ୍ଦି ପକାଇଲା—"ବୋଉ ଲୋ, ତୁ କୁଆଡ଼େ ଗଲୁ ! ମୋ ବୋଉ ଲୋ" ତୁମେ ଜାଣିନା ରେ, ବାବୁ ! କେକେଇ ଖାଲି

ଟି'କ କଥାରେ ମତେ ମାରୁଚ—ତଣ୍ଟି'ଆ ଦଉଚ । ମୋର ଆଜ କପାଳ ବଡ଼ ମନ୍ଦ—କା ମୁହଁ ଦେଖି ଉଠିଥିଲି କି । ସକାଳୁ ଘଡ଼ିଏ ତେଲ ଢାଳିଲି; ମାଛ ବାଛୁ ବାଛୁ ବିଲେଇ ଓଟାରି ନେଲା । କକେଇ ଘରେ ନ ଥିଲା । ମୁଁ ସତିଆକୁ ଯୋଡ଼ିଏ ପଇସା ଦେଇ ମାଛ ସକାଶେ ପଠାଇଲି—ତମେ ମତେ ଯୋଉଁ ପଇସା ଦେଇଥିଲ, ସେଇ ପଇସା । ଭାତ କରି ବସିଲି, ଭାତ ଗାଳୁ ଗାଳୁ ପଲମଟା କମିତ ହାଣ୍ଡି ହାତରୁ ଖସିଗଲା; ଆଉ ତ ପେଜ ପଡ଼ି ମୋ ହାତ ଗୋଡ଼ ଫୋଟକା ! ମୁଁ 'ବୋଉ ଲୋ' ହୋଇ ପଲମ ଛାଡ଼ିଦେଲି—ଭାତହାଣ୍ଡି ଝିଙ୍କାରୁ ଗଡ଼ିପଡ଼ି ନବଚୂନା । କକେଇ ଘରଟିକି ଆସି ଆଜ ଯେତକ ମତେ ବାଡ଼େଇଲା—ବାଡ଼େଇ ବାଡ଼େଇ ବାହୁ ଖଣ୍ଡିଆ କରି ପକେଇଲା । ଦେଖ ରେ ବାବୁ ! ପିଠାଖଡ଼ିକାରେ ଚେଙ୍କେ ଦେଇ ମୋ—ମୋ ବାହୁରୁ ପୁଳାଏ ମାଉଁସ ଛୁଣ୍ଡେଇ ପକେଇଚ । ମତେ କହୁଚ "ମରି ଅଲକ୍ଷଣା ଅର୍ଖିତ; ଜଳଜଳାକୁ ଆଣି ନିତ ଲୋକସାନ ! ଏଁ ଏଁ—।" ରଘୁ ଆଉ କହି ପାରିଲା ନାହିଁ—ଦୁଇ ହାତରେ ମୁହଁ ଚିପି ଧରି ସଁ ସଁ ହୋଇ କାନ୍ଦିବାକୁ ଲାଗିଲା ।

ବାବୁ ଆଉ ସୀତା କଣ କହିବେ ! ତାଙ୍କର କଣ ହୋଇଗଲା । ରଘୁର ଗୋଡ଼ରେ ବଡ଼ ବଡ଼ ଫୋଟକା, ପୋଡ଼ାଘା, ବାହୁର କଟାଘା, ଆଉ ପିଠି ଓ ଗୋଡ଼ ହାତରେ ନୋଳା ବହିଥିବାର ଦେଖି ଧୈର୍ଯ୍ୟ ଧରି ପାରିଲେ ନାହିଁ । ସେମାନେ ମଧ୍ୟ କାନ୍ଦି ପକାଇଲେ । ରଘୁର ଲୁହ ଝରଝର ବୋହୁଚ୍ଛି, ଅନେକ ଚେଷ୍ଟା କରି ସୁଖା ମୁହଁରୁ କଥାଟିଏ ବାହାରି ପାରୁ ନାହିଁ । କିନ୍ତୁ ତାଙ୍କର କାନ୍ଦ ଦେଖି ରଘୁ ସମ୍ଭାଳି ଗଲା; ଆଖି ପୋଛୁ କହିଲା—"ଆଜ ନ'ଟାକୁ ଗଣ୍ଡିଏ ବାସି ପଖାଳ ଖାଇଥିଲି । ଆଉ କକେଇ କିଛୁ ଖାଇବାକୁ ଦେଲା ନାହିଁ । ମତେ ହାଣ୍ଡିଶାଳ ଦୁଆର ମାଡ଼ିବାକୁ ମନା କରିଚ, କହିଚ,—ଗୋଡ଼ ହାଣି ପକେଇବ । ମୁଁ ଆଜ ଆଉ କିଛୁ ଖାଇ ନାହିଁ ।"

ତାଙ୍କର ଆଉ ସହ୍ୟ ହେଲା ନାହିଁ, ଝଟ୍ ଉଠି ରଘୁକୁ ଘରକୁ ଟାଣି ନେଲେ । "ତୁ ଉପାସ, ଆ ଖାଇବୁ, ବୋଉ ଶୁଣିଲେ କଣ କହିବ ?"

ବୋଉ ରନ୍ଧାଘର ଦୁଆର ମୁହଁରେ ବସି ପିତେଇ ନାନା ସହିତ କଥା-ବାର୍ତ୍ତା ହେଉଥିଲେ । ଭାଇ ଭଉଣୀ ସେଠି ପହଞ୍ଚି କହିଲେ, "ବୋଉ ଲୋ ! ଦେଖ, ଦେଖ—ରଘୁର କକେଇ ତାକୁ କଣ କରିଚ । ବାହୁରୁ ପୁଳାଏ ମାଉଁସ ଛୁଣ୍ଡେଇଚି । ଭାତ ଗାଳୁ ଗାଳୁ ପେଜ ପଡ଼ି ତା ହାତ ଗୋଡ଼ ଫୋଟକା, ପୁଣି ସକାଳୁ ତା ଭାତ ବନ୍ଦ ।"

କଥା ଶୁଣି ସରସ୍ୱତୀ ଆଶ୍ଚର୍ଯ୍ୟ ହୋଇଗଲେ । ରଘୁର ଅଶ୍ରୁମଳିନ କାତର ମୁଖ, ହାତ ଗୋଡ଼ ଫୋଟକା, ବାହୁର ଘା, ଦେହଯାକର ନୋଳାଫଟା, ଆଉ

ଅତ କଦର୍ଯ୍ୟ ବେଶ ଦେଖି ଚମ୍ପାବୋଉ ଓ ପିତେଇ ନାମା ଉଠି ଆସିଲେ । ଲକ୍ଷ୍ମୁଣୀ ବୁଢ଼ୀକି ସ୍ନେହର ସାଗର । ନିଜେ ସନ୍ତାନ ହୀନା ଓ ଯୌବନରେ 'ବିଧବା' ସେଥିପାଇଁ ସମସ୍ତଙ୍କ ପିଲାଙ୍କୁ ସ୍ନେହ କରଥାଏ । ରଘୁର ଗୀତ ଶୁଣିଲେ ତା ଆଖିରୁ ଲୁହ ଝରଝର ବହେ; ମନେ କରେ—ସତେ ସେ ସାକ୍ଷାତ୍ ବାଳକୃଷ୍ଣ । ବୁଢ଼ୀ ରଘୁକୁ ଦୁଇ ହାତରେ କୁଣ୍ଢାଇ ପକାଇ ପଣତରେ ମୁହଁ ପୋଛିଦେଲା; ଟାଣି ଟାଣି ରନ୍ଧାଘର ପିଣ୍ଡାକୁ ନେଲା; ମୁହଁ ଧୁଆଇ ଜଳଖିଆ ବାଢ଼ି ବସିଲା । ସରସ୍ୱତୀ ରଘୁ ପିଠିରେ ସ୍ନେହରେ ହାତ ବୁଲାଇ କତରେ ବସିଲେ । ମଣ୍ଡା, କାକରା ପିଠା ଇତ୍ୟାଦି ଦୁଇ ତିନି ପ୍ରକାର ଜଳଖିଆ ପେଟ ପୂରାଇ ଖାଇ ରଘୁ ନିଜର ସବୁ ଦୁଃଖ ଭୁଲିଗଲା । ତାହାର ହାତ ଧରି ସରସ୍ୱତୀ ମଝିଘରକୁ ନେଲେ; କତରେ ବସାଇ ତାହାର ସବୁ ଦୁଃଖକାହାଣୀ ଶୁଣିଲେ । ତାଙ୍କ ଆଖିରୁ ଲୁହ ବୋହିଗଲା । ରଘୁର ଅସାକ୍ଷାତରେ ତାହା ପୋଛି ଦେଇ କହିଲେ—"ବାପ, ତୁ ଏଠି ଥା, କକେଇ ବସାକୁ ଯା ନା ।"

ରଘୁର ଭୟ ହେଲା । ସେ କହିଲା, "ନ ଗଲେ କକେଇ ମାରିବ ।" ସରସ୍ୱତୀ ଆଶ୍ୱାସ ଦେଇ କହିଲେ, "ଆଉ ମାରି ପାରିବ ନାହିଁ, ମୁଁ ସେ କଥା ବୁଝିବି ।"

ରଘୁ ସରସ୍ୱତୀଙ୍କ କଥାରେ ନିଶ୍ଚିନ୍ତ ହୋଇ ବାବୁ ଓ ସୀତା ସଙ୍ଗରେ ବସି ଖେଳିଲା ।



# ତୃତୀୟ ଅଧ୍ୟାୟ ।



ଘଡ଼ି ଏଗାରଟାକୁ କଚେରି ସାରି ଚୌଧୁରୀଏ ଘରକୁ ବିଜେ ହେଲେ । ଚର୍ଚ୍ଚାର ଖବର ପଡ଼ିଗଲା । ଆସନ, ପାଣି, ଭାତ, ତିଅଣ ସଜାଡ଼ି ଥୁଆ ହେଲା ପରେ ଚୌଧୁରୀଏ ମଣୋହିରେ ବସିଲେ ।

ଆସନରେ ଚଉଧୁରୀଏ ଚକା ପାରି ବସିଛନ୍ତି । ଶରୀରଟି ବିଶାଳ, ବର୍ଣ୍ଣ ମସିଆ, ବୟସ ବି କୋଡ଼ି ଉପରେ । ପରିଧାନରେ ମୋଟ ଗାମୁଛା, ଅଣ୍ଟାରେ ଦି' ସରି ରୂପାସୂତାରେ ଗୋଛାଏ କୁଞ୍ଚିକାଠି । ଚଉଧୁରୀଏ କୁଞ୍ଚିକାଠିଟି କେବେ ହସ୍ତାନ୍ତର କରନ୍ତି ନାହିଁ; ସ୍ତ୍ରୀଙ୍କି ସୁଦ୍ଧା ଦେବାକୁ ଭରସି ପାରନ୍ତି ନାହିଁ । ବାଁ କାନ୍ଧରେ ପଇତା, ଗଳାରେ ତୁଳସୀମାଳ ସହିତ ଗୁନ୍ଥା ସୁନାର ସରୁ ଧାନମାଳି, କାନରେ ବଡ଼ବଡ଼ ମାଉଁଳି ନୋଳି, କପାଳ ଓ ଛାତିରେ ତିନିପଟା ଚନ୍ଦନ ତିଳକ ଯହିରେ କଟା ହୋଇଛି; ମୁଣ୍ଡରେ ବଡ଼ାଏ ଚୁଟି, ଚୁଟି ଅଗକୁ ଗଣ୍ଠିଟିଏ । ଚଉଧୁରୀଏ ସେକାଳିଆ ପୁରୁଣା ଲୋକ, କଲିକତି ଫେସନରେ ବାଳ କଟାଇବା ଦି' ଆଖିରେ ଦେଖି ପାରନ୍ତି ନାହିଁ । ଆଜିକାଲିକା ଢଙ୍ଗର ହେ ପକ୍ଷପାତୀ ନୁହନ୍ତି । ଦଶ ତିଅଣ ନ' ଭଜା ସୁଖ ପାନ୍ତି ନାହିଁ । ବେଶି ଖରଚ ହେଉଛି କହି ସ୍ତ୍ରୀଙ୍କ ଉପରେ କଟକଟ ହୁଅନ୍ତି । ତଥାପି ସରସ୍ୱତୀ ନିତି ନ' ତିଅଣ ତେର ଭଜା କରି ସ୍ୱାମୀଙ୍କୁ ପରଶିବାରେ ଅଭ୍ୟସ୍ତା—ସ୍ୱାମିଙ୍କ ତିରସ୍କାର ହସି ହସି ଉଡ଼ାଇ ଦିଅନ୍ତି । ଘରଖର୍ଚ୍ଚ ପାଇଁ ଚଉଧୁରୀଏ ମାସକୁ କୋଡ଼ିଏ ଟଙ୍କା ଦିଅନ୍ତି, ସେଥିରେ ନିଅଣ୍ଟ ହୁଏ । ତେଣୁ ସରସ୍ୱତୀଙ୍କୁ ନାନା ଉପାୟରେ ଘରଟି ଚଳାଇବାକୁ ପଡ଼େ ।

ତାଙ୍କ ଗୁହାଳରେ ଗୁହାଳେ ଗାଈ । ପିତେଇ ନାମୀ ଓ ଚମ୍ପାବୋଉ ଗାଈଙ୍କ ସେବା କରନ୍ତି, ଚମ୍ପାବୋଉର ପୁଅ ମହନା ଚରିବୁଲା କଥା ବୁଝେ । ଘରେ କୋଡ଼ିଏ ପଚିଶ ସେର ଦୁଧ ହୁଏ । ଘରଖର୍ଚ୍ଚ ଯାଇ ବାକି ମାସେକା ଦୁଧତକ ବିକ୍ରୀ ହୁଏ । ଘର ପଛପଟ ବିସ୍ତୃତ ବାଡ଼ିରେ ପରିବା ଫସଲ ବାରମାସ । ନରିଆ, ହରିଆ ଦି ଭାଇ ଜାତିରେ ଖଣ୍ଡାଇତ—ବାଡ଼ି ବଗିଚା କାମ ବଡ଼ ସୁନ୍ଦର କରନ୍ତି । ଆମଦାନି ବିକ୍ରୀ କାରବାର ବରାବର ଲାଗିଥାଏ । ବାରି ପଛପଟକୁ ଯୋଡ଼ିଏ ପୋଖରୀ । ତେଣ୍ଡା ମାରି ବଗିଚାରେ ପାଣି ମଡ଼ାଇବା ଛଡ଼ା ପୋଖରୀରେ ବର୍ଷକୁ ବର୍ଷ ଜିଆଳ ଛଡ଼ା ହୁଏ ।

ଏ ସବୁରେ ସରସ୍ୱତୀଙ୍କର ବିଶେଷ ଲାଭ । ଘରଖର୍ଚ୍ଚ ତୁଲେଇ ବଳକା ଟଙ୍କାରେ ସନ୍ତା ଲଗାଇ, ଜମି ବନ୍ଧା ରଖି, ଆମ୍ବ, କରଞ୍ଜ, ପୋଲଙ୍ଗ ତେଣ୍ଟା

କୋଠ ନେଇ ବିଶେଷ ଅର୍ଥାଗମ ହୁଏ । ଚାକର ଚାକରାଣୀ ତାଙ୍କୁ ବଡ଼ ଭୟ ଓ ଭକ୍ତି କରନ୍ତି । ସର୍ବଦା ନିରଳସ ଏବଂ ପ୍ରଫୁଲ୍ଲସ୍ୱଭାବ ସରସ୍ୱତୀ ସ୍ୱାମିଙ୍କର ସବୁ ସେବା ନିଜେ କରନ୍ତି ।

ଚୌଧୁରିଙ୍କର ଭୋଜନ ହେଉଛି । ସରସ୍ୱତୀ ବିଞ୍ଚଣା ଧରି ଗରମ ଭାତ ବିଞ୍ଚୁ ବିଞ୍ଚୁ 'ଏଇଟା ଖାଅ', 'ସେଇଟା ଖାଅ' କହି ସ୍ୱାମୀଙ୍କର ଭୋଜନ ଚର୍ଚ୍ଚା କରୁଛନ୍ତି । କିନ୍ତୁ ଚଉଧୁରିଏ ଭାବୁଛନ୍ତି ଅନ୍ୟ କଥା । "ହଇ ହେ, ସାଙ୍ଗବୋଉ, ଏ କଣ ତମର ? 'ଏଇଟା ଖାଅ', 'ସେଇଟା ଖାଅ' କେତେ କହୁଚ ? ଦଶ ତିଅଣ, ନ' ଭଜା କଲେ ଏକାପାଟିକେ କେତେ ଖାଇବି ?"

"କଣ ଦଶ ତିଅଣ ହୋଇଚି ? ମାଛତିଅଣଟା ନ ହୋଇଚି । ଆଉ ଏ ମୁଗ ପଇତ, ବାଇଗଣ ଭଜା, ଆଉ ଗୋଟିଏ ସନ୍ତୁଳା—ଏଇ ଦଶ ତିଅଣ, ନ' ଭଜା ?"

"ମୁଁ କହେଁ, ଭାତ ଖାଇଲେ ଦେହରେ ବଳ । ମୁଗ ପଇତ, କଖାରୁ ସନ୍ତୁଳା, ବାଇଗଣ ଭଜା ଖାଇଲେ ତ ଦେହରେ ବଳ ଆସିବ ନାହିଁ । ଏ ଖାଲି ତହଖରଚ, ସଉକ ଖିଆ—ଏ ବଡ଼ ଲୋକଙ୍କୁ ସାଜେ । ଆମ ଘର ଦୁଃଖୀ ଗରିବ ଏପରି ଖାଇ କୋଉଠୁଁ ଚଳିବେ ହେ ? ଏ କଣ ତମର—ଆଜି ବଡ଼ ମାଛ କୋଉଁଠୁଁ ପାଇଲ ? ମାଛ ସେର ଆଠଣା ଦଶଣା, କିରିଆ କଣ ବଜାର କରି ଶିଖୁଚ କି ? ଦି ପଇସାର ଚୂନା ଚିଙ୍ଗୁଡ଼ି ଆଣି ବେସର ପାଣିଟେ କରି ଦେଇଥିଲେ ହୋଇ ନ ଥାନ୍ତା ? ଏଇ ତ ତହଖରଚ ! ମାଛ ଖାଇବ, ବଡ଼ ଖାଇଲେ ଯାହା, ଚୂନା ଖାଇଲେ ତାହା—ଏକା ସୁଆଦ; ପୁଣି କବିରାଜୀ ଶାହାସ୍ତ୍ରରେ କହନ୍ତି—'ଚୂନା ମାଛ ଦେହକୁ ହିତ ପଥି, ବଡମାଛ ଗରିଷ୍ଠ' ।"

"ବଜାରରୁ ଆସି ନାହିଁ—ପୋଖରୀରୁ ମରିଚି । ମୁଁ ପରା ଆଉ ସାଲ ଜାଆଁଳ ଘୁଡ଼ିଥିଲି । ଆଜି ପଚିଶ ସେର ମାଛ ବିକିଲି । କି କି ରୋହିମାନ, କି କି ମିରିକାଳି, ଭାକୁର, କଆକେରଣ୍ଡା, ଆଉ ବଡ଼ ବଡ଼ ଚିଙ୍ଗୁଡ଼ି । ତମେ କଟରଠେଇଁ ଥିଲ ।"

ଚଉଧୁରାଏ ଈଷତ୍ ହସି କହିଲେ, "ମୁଁ ଦେଖୁଚି, ତମେ ବଡ଼ ମହାଜନ ହୋଇଚ । ପଇସା କେତେ ପାଇଲ ?"

ସରସ୍ୱତୀ ମଧ୍ୟ ଆହ୍ଲାଦରେ କହିଲେ, "ସେ ପଇସାରେ ତମର କଣ ? ହୋଇଚି ଆଠ ଦଶ ଟଙ୍କା । ଆଉ ଚାରି ସେର କଟା ମାଛ ରଖାଇଥିଲି ।"

" ଏଇ କଥା ତ ତମର କାଳକ ନ ଗଲା ! ୟାଙ୍କୁ ଖୁଆ, ତାଙ୍କୁ ଖୁଆ— ଏଥିରେ ଆମର ପେଟ ପୂରିବ ?"

"ଆଉ ଆମେ କଣ ଏକା ଖାଇଦବୁଁ ? ଆମକୁ ପ୍ରାପ୍ତ ହେବ କିଆଁ ?"

"ପ୍ରାପ୍ତ ହେବ ନାହିଁ ? ନାହିଁ ବୋଲି କଙ୍ଗାଳ, ଫକୀର, ଭିକାରି—ମାନଙ୍କୁ ବାଣ୍ଟୁଥିବ, ତେବେ ପ୍ରାପ୍ତ ହେବ ! 'ଯେତେ ବାଉଁଶ, ସେତେ ପୋଲ,' ଆମେ ତ ପଇସାର ମୁଣ୍ଡ, ଦାନ ଧ୍ୟାନ କରିବୁଁ ଚାରି ପଇସା —ଏଥିରେ ନାହିଁ ବୋଇଲେ ଦରିଦ୍ରତା ଆସିବ । ଫେର୍ ଆଉ କିଛି କାହାକୁ ବାଣ୍ଟିବ ?"

"ତମ ଗୁମାସ୍ତାମାନଙ୍କ ଘରକୁ ଜଣକେ ଅଧ ସେର ଲେଖାଏଁ କଣ୍ଠା ମାଛ ପଠେଇଥିଲ; ଆଉ ହୋତାଙ୍କ ଘରକୁ ତ ସେର ।"

"ତମର ଯେମିତ ବୁଦ୍ଧି—ପାଏ ପାଏ ଚୂନାମାଛ ପଠେଇ ଦେଇଥିଲେ ହେଇ ନ ଥାନ୍ତା ? କଣ୍ଠା ରୋହି ମାଛ କେତେ ମହରଗ !"

"ସେର ଦଶଣା ।"

"ତେବେ ତମେ ପାଞ୍ଚ ଟଙ୍କାର ମାଛ ଦାନ ଧ୍ୟାନରେ ସାଇଲ !" ଏହା କହି ଦୀର୍ଘନିଶ୍ୱାସଟିଏ ପକାଇ ରୁକ୍ଷକଣ୍ଠରେ କହିଲେ—"ଏମିତ ଆଉ କର ନା । ଏ ଥର ବାଡ ପୋଖରୀରୁ ମାଛ ଧଇଲେ ପାଏ ପାଏ ଚୂନା ମାଛ ପଠେଇବ । ରୋହି ମାଛରେ କି ଦାନ ଧ୍ୟାନ ! ପାଞ୍ଚ ଟଙ୍କାର ମାଛ ବାଣ୍ଟିଲ, ତମକୁ କଣ ଟଙ୍କା ପିତା ଲାଗୁଚି କି ?"

ସରସ୍ୱତୀ ନୀରବରେ ପାନ ଭାଙ୍ଗିବାକୁ ଉଠିଗଲେ । ଚୌଧୁରିଏ ହାତ ଧୋଇ ଖଟରେ ବସି ପାନ ଚୋବାଉ ଚୋବାଉ ସ୍ତ୍ରୀଙ୍କୁ ଉଦ୍ଦେଶ କରି କହିଲେ— "ହଇ ହେ ! ପିଣ୍ଡାରେ ଦେଖିଲ ରଘୁଆ ଖେଳୁଚି । ସେ ତ ହରୁଷୀ ପୁରୁଷ । ଶ୍ରେଷ୍ଠ ଲୋକଙ୍କ ପିଲାଙ୍କୁ ଘରେ ପୂରାଇବାର ନୁହେ, କାଲେ କଣ ଚୋରି କରି ନେଇଯିବ !"

"ସେ ସେମିତ ନୁହେ—ତା ପରି ପିଲା କୋଟିକରେ ଗୋଟିଏ । ସେ ବାପ ମା ହୀନ ଅନାଥ,—ତା କକାଟା ତାକୁ ବଡ଼ ଦୁଃଖ ଦଉଚି । ତମେ ଟିକିଏ ମନା କରି ଦିଅନ୍ତ । ମୋ ଦିହ ସହୁ ନାହିଁ; ପିଲାଟାକୁ ଆଜ କେତେ ମାରିଚି !"

"ଯାର କଣ ଗୁଣ ଥିବ । ଶୁଖିଲାରେ କଣ ମାଇଲା ?"

"ଭାତହାଣ୍ଡିଟା ଭାଙ୍ଗି ଦେଇଥିଲା ତ, ଆଉ କଣ କରିଚି କି ?"

"ଯା କୁହ । ହାଣ୍ଡି ଗୋଟାକ ଚାରି ପଇସା । ଯାହାର ପଇସାଏ କମେଇବାର ଶକ୍ତି ନାହିଁ, ସେ ଚାରି ପଇସା ଲୋକସାନ କଲେ କିଏ ସହିବ ?"

"ତା ବୋଲି ହାତ ଗୋଡ଼ ଚୂନା କରିବ ? ତମେ ଟିକିଏ ତାକୁ କହିବ ।"

"ମୁଁ ତାକୁ କିଆଁ କହିବି ? ସେ ପର ପିଲା । ତା କକେଇ ତାକୁ ମାରୁ, ହାଣୁ, କାଟୁ—ମୋର ସେଥିରେ କଣ ?"

"ପିଲାରେ କି ପର—ପିଲା ତ ସଭିଙ୍କର । ମୋ ରାଣ, ତମେ ତାକୁ ଯତନ କରିଦବ । ହରୁଷିଆ ବଡ଼ ଦୁଷ୍ଟ ଲୋକ । ଚୋରଟା ! ଏତେ ଟଙ୍କା ମାରି ଖାଉଚି, ତମେ ତାକୁ ଶାସନ କର ।"

"ତମେ ମାଇପି ଲୋକ ବୁଝ ନା । ସେ ହେଲା ଗୁମାସ୍ତା—ମୋ ଡାହାଣ ହାତ । ଏ ପିଲାଟା କଥା ନେଇ ମୁଁ ତା ସଙ୍ଗେ କଳି କରିବାକୁ ଯିବି ? ତା ନିଜ ପିଲା—ସେ ମାଇଲେ କେତେ, ଧଇଲେ କେତେ ।"

ସରସ୍ୱତୀ କାତର ହୋଇ କହିଲେ, "ତମେ ନ ବୁଝିଲେ ବୁଝିବ କିଏ ? ପିଲାଟି ମା ବାପ ଛେଉଣ୍ଡ—ଅରକ୍ଷିତ ।"

ଚନ୍ଦ୍ରଶେଖର କିଛି ନ ଶୁଣି, ଉଠି ଶୋଇବା ଘରକୁ ଗଲେ । 'ଶିବ' 'ଶିବ' ଶୁଭୁଥାଏ । ପିଣ୍ଡା ଆରପଟରେ ଠିଆ ହୋଇ ରଘୁନାଥ ସବୁ ଶୁଣିଲା । ସେ ଅରକ୍ଷିତ, ଏହି କଥାର ତୀବ୍ର ଯାତନା ମୁହୂର୍ତ୍ତ ମଧ୍ୟରେ ବାଣଟି ପରି ତାର ଶ୍ରୁତିରେ ବାଜିଗଲା । ତା ଆଖିରୁ ବଡ଼ ବଡ଼ ଦୁଇ ଟୋପା ଲୁହ ଭୂଇଁରେ ପଡ଼ିଗଲା । ସୀତା ନିକଟରେ ଠିଆ ହୋଇଥିଲା । ରଘୁକୁ କାନ୍ଦିବାର ଦେଖି ମା ପାଖକୁ ଦଉଡ଼ି ଯାଇ ବିକଳ ସ୍ୱରରେ କହିଲା, "ବୋଉ ଲୋ, ରଘୁ କାନ୍ଦୁଚି ।"

ସରସ୍ୱତୀ କିଛି ଉତ୍ତର ଦେଲେ ନାହିଁ; କଣ ବା ଉତ୍ତର ଦେବେ । ଭାବନାରେ ରାତିରେ ନିଦ ହେଲା ନାହିଁ—ରଘୁନାଥର କଣ କରିବେ । କେତେ ଭାବୁ ଭାବୁ ଶେଷକୁ ମନେ ପଡ଼ିଲା 'ଅଲେଇଚ' କଥା । ସରସ୍ୱତୀ ସୁଖରେ ନିଦ୍ରା ଗଲେ ।

ସକାଳେ ହରୁଷିଆ କାହା ମୁହଁ ଦେଖି ଉଠିଥିଲା କି, ରାତିରେ ରଘୁ କେଉଁ ଆଡ଼େ ଗଲା—ଖୋଜି ଖୋଜି ପାଇଲା ନାହିଁ । ଭାବିଲା, ମାଡ଼ ଖାଇଚି ବୋଲି ଲୁଚିଚି । ରାଗରେ ନିଜେ ଖାଇ ପିଇ ଶୋଇଲା । ଚୌଧୁରି ଘରୁ ମାଛ ଆସିଥିଲା । ସେ ଆଉ ସତିଆ—ସେ ମଧ୍ୟ ହରୁଷିଆ ତଳ ଗୁମାସ୍ତା—ଦୁଇ ଜଣଯାକ ଆମ୍ବୁଲ ଫଡ଼ା ଦେଇ ବଡ଼ ମାଛ ଝୋଳ କରି ଖାଇଲେ । ହରୁଷିଆ ଆନନ୍ଦରେ ଭଙ୍ଗା ଭାତହାଣ୍ଡି କଥା ଭୁଲିଲା, କିନ୍ତୁ ସତିଆ ଥରେ ଥରେ କହୁଥାଏ—'ଆହା, ପିଲାଟା ଥାନ୍ତା କି, ଗଣ୍ଡିଏ ଖାଇଥାନ୍ତା ।' ସତିଆ ରଘୁକୁ ସୁଖ ପାଏ ।

ବଡ଼ିଭୋରୁ ଦାନ୍ତପାଣି କରି ହରୁଷିଆ କଚେରିଠି ପହଞ୍ଚିଲା ବେଳକୁ ଦେଖିଲା, ଚୌଧୁରିଏ ଆଗରୁ ଆସି ବସି ହିସାବ ଖାତା ଦେଖୁଛନ୍ତି ।

ଖାତାକୁ ବୁଝିଲା, ସାଆନ୍ତେ ଆଜି ଅପ୍ରସନ୍ନ । କେଜାଣି ଯଦି ଦେବତା ଅପ୍ରସନ୍ନ ହୋଇଥିଲେ ସେ ଏତେ ବିଚଳିତ ହୁଅନ୍ତା ନାହିଁ । ନଈକୂଳରୁ କାଠ ଆଣି ଏ ଥର ଟଙ୍କାକେ ଦୁଇ ଅଣା ଯାଗାରେ ଚାରି ଅଣା ଲାଭ କରିଚ୍ଛି—ଧରା ପଡ଼ିଲା କି ? ତାହାର ଭୟ ହେଲା, କିନ୍ତୁ ସେ ଭାବ ଗୋପନ କରି କହିଲା—"ସାଆନ୍ତେ, ଆଜି କେଉଁଠୁ ଅଇଲଣି ?" ସାଆନ୍ତ ହରିଷିଆ କଥାରେ ବିରକ୍ତ ହୋଇ କହିଲେ, "ଆଉ ମୁଁ ତ ଗଞ୍ଜେଇ ଆପୁ ଖାଏ ନା ହେ, ଦିନ ଦି ପହର ସରିକି ପଡ଼ିବି ଭାଜିବ ! ତମ ପରି ଲୋକ ହେଉ ନୁହେଁ । ମୋର ସବୁ ଖାଇଗଲେ ହେ—ମତେ ବୁଡ଼ାଇ ମାରିଲେ ହେ । ଏ ଗୁମାସ୍ତାଗୁଡ଼ାକ ତଣ୍ଟିକଟା ଚୋର !" ଏହା କହି ସେ ଚତୁର୍ଦ୍ଦିଗ କରି ସେମାନଙ୍କର ଚତୁର୍ଦ୍ଦଶ ପୁରୁଷ ପର୍ଯ୍ୟନ୍ତ ପିତୃ ପିତାମହଙ୍କ ଉଦ୍ଦେଶ୍ୟରେ ନାନା ସୁବାକ୍ୟ ଅଳଙ୍କାରରେ ପ୍ରୟୋଗ କରୁ କରୁ ଗର୍ଜ୍ଜନ କରି ଉଠିଲେ— "ହରିବେ, ତତେ କହିଥିଲି—ସେ ରାଣ୍ଡ ବ୍ରାହ୍ମଣୀର ଦି ମାଣ ବନ୍ଧା ଜମିର ସୁଧ ମୂଳ କଷି ଥୋଇବାକୁ । କାହିଁ କରି ନାହୁଁ ? ଜାଣ ତମେ—ସେ ଦୋକଟା ଭଲ ଜମି, ପାଣି କଷ୍ଟ ନାହିଁ; ଏ'ପରି ଜମି ହାତରୁ ଛାଡ଼ିବ ? ଦି ପଇସା ଯାଗାରେ ଠାଏ ଠାଏ ଅଢ଼େଇ ପଇସା ବଢ଼େଇଚ । ହରି ରେ ବିଚରା, ଭୁଶାଳ, ପିଆଶାଳ, କୁମ୍ଭ ସବୁ ଅଲଗା ଅଲଗା ହିସାବ ନ କରି ଏକାଠି ଗୋଳେଇ ପୋଳେଇଚୁ କାହିଁ ? ସବୁ ତମ ପଇସା ଖାଇବା ଫନ୍ଦି । ଟଣ୍ଟିଚପାଗୁଡ଼ାକ, ତିନି ଦିନ ସମୟ ଦେଲି । ଭଲରେ ଭଲରେ ହିସାବ ନିକାଶି ଦବ, ନହେଲେ ବରତନ କାଟିବି ।"

ଏତିକିବେଳେ ହରିହର ଜେନା ପହଞ୍ଚିଲେ । ସାଆନ୍ତେ ତାହା ସହିତ କଥାରେ ଲାଗିଗଲେ । ହରିଷିଆ ପ୍ରଭୁଙ୍କ କୋପରୁ ନିସ୍ତାର ପାଇ ଝଟ୍ ହିସାବ ଖାତାଟି କାଢ଼ି ଆଣି ମିଛ ଯୋଡ଼ିବାକୁ ବସିଗଲା । ସେତେବେଳେ ରଘୁନାଥ କଥା ତାର ଆଦୌ ମନେ ନ ଥାଏ । ହେଲେ, 'ଅର୍ଜିତକୁ ଦୈବ ସାହା' ।

ସେ ଦିନ ଉପର ଓଳି ରାଣୀହାଟ ଶଗଡ଼ଆସାହାରେ ଆପଣା ଘରର ବାରିପିଣ୍ଡାରେ ବସି ସଞ୍ଜ ବତୀର ଶୁଳଳ ବାଳୁଥିଲେ ତାରାମଣି । ତାରାମଣି ସରସ୍ୱତୀଙ୍କର 'ଅଲେଇଚ' । ତାଙ୍କ ସ୍ୱାମୀ ଜଗନ୍ନାଥ କବିରାଜ । କବିରାଜ କଲା ଦିନୁ ଜଗନ୍ନାଥ ଗ୍ରାମ ଗ୍ରାମ କଟକରେ ଅଛନ୍ତି; ନିଜ ଅର୍ଜ୍ଜନରେ ସାନ ଖଣ୍ଡିଏ ପକ୍କାଘର ତିଆରି କରିଛନ୍ତି । ଗୃହାଳୀଟିଏ ଖୋଲି ଗାଁର ସାନ ସାନ ପିଲାଙ୍କ ମଧ୍ୟ ଦି ଅକ୍ଷର ପଢ଼ାନ୍ତି । ସେ ବାହାରେ ଥିଲେ ତାରାମଣି ତାଙ୍କ କାମଟା ତୁଲାନ୍ତି । ସ୍କୁଲରେ ପଢ଼ି ନ ଥିଲେ ସୁଦ୍ଧା ସେ ପାଠ ପଢ଼ିଥିଲେ—ବିଶେଷତଃ, ଓଡ଼ିଆ ଆଉ ସଂସ୍କୃତ । ପୁଣି ସ୍ୱାମୀଙ୍କଠାରୁ ଶିକ୍ଷା କରି ନାନା ଔଷଧ ମୌଷଧି ତିଆରି କରି ଜାଣିଥିଲେ । ତେଣୁ ପିଲାପିଲିଙ୍କ ଦେହ କିଛି ହେଲାକ୍ଷଣି ତାଙ୍କ ଦୁଆରେ ଗାଁ ସ୍ତ୍ରୀଲୋକେ ଆସି ଧାରଣା ଦେଉଥିଲେ । ଗାଁ ଗଣ୍ଡାକର ସୁଖ ଦୁଃଖ ସବୁଥିରେ ଥିଲେ ଏ ପରିବାର ଭାଗିଦାର ।

ମାସକ ତଳେ ଗଉଡ଼ ଚୁଇଁଆ ବେହେରା ଝାଡ଼ାକଇରେ ମରିଥିଲା । ଘର କଡରେ ଘର, ପୁଣି ଚୁଇଁଆ ଘରଯା ଚକରାମା ତାରାମଣିର ଖୁବ୍ ପ୍ରିୟ । ସେଥିପାଇଁ ସେ ପ୍ରାୟ ଶେଷାବଧି ସେଠି ଥିଲେ । ଜଗନ୍ନାଥ ନିଜେ ଅନେକ ଔଷଧ ଦେଲେ, ଶେଷକୁ ଡାକ୍ତରଖାନା ପଠେଇଲେ; ମାତ୍ର ତାର ପରମାୟୁ ପୂରିଥିଲା ଡାକ୍ତରଖାନାରେ ଚୁଇଁଆଁ ବେହେରା ଶେଷନିଶ୍ୱାସ ନେଲା । ତାହାର ଶ୍ରାଦ୍ଧ ଅନ୍ତେ ଚକରାମା ତାରାମଣି କଡରେ ପଡ଼ିଛି । ତାର କଣ ବ୍ୟବସ୍ଥା କରିବେ, ସେହି ଚିନ୍ତାରେ ସେ ବ୍ୟସ୍ତ । ଏହି ସମୟରେ ଜଗନ୍ନାଥଙ୍କ ପାଟି ଶୁଭିଲା । ତାରାମଣି ଉଠି ଦାଣ୍ଡକୁ ଚାହିଁଲେ । ଜଗନ୍ନାଥ ଭିତରକୁ ପଶି ଆସିଲେ । ତାଙ୍କ ମୁହଁକୁ ଚାହିଁ ତାରାମଣି କହିଲେ, "ତମେ 'ଅନେଇଚ' ଘରକୁ ଯାଇଥିଲ ? ଚକରାମା ଆସି ବସିଚି, କଣ କରିବା ?" ଜଗନ୍ନାଥ ପିଣ୍ଡାରେ ବସି ପଡିଲେ । ତାଙ୍କର ଗୋଡ଼ ଧୋଇବା ପାଇଁ ଢାଳେ ପାଣି ଆଣିଦେଇ ପୁନଶ୍ଚ ତାରାମଣି କହିଲେ, "ତମେ ତ ଜାଣ, ଚକରାମାର ପିଲା ଗୁଡ଼ିଏ ସଭିଏଁ ବରଷିକିଆ, କୋଳ ପିଲାକୁ ତ ମୋଟେ ଦି ମାସ । ଘରେ ଶାଶୁ ବୁଢ଼ୀ ଛଡ଼ା ଅନ୍ୟ ମଣିଷ ନାହାନ୍ତି । ସେଥିରେ ପୁଣି ସ୍ୱାମୀଟି ଗଲା । ଧନ ସମ୍ପତ୍ତି ଭଲ ଥାନ୍ତା ! ଚୁଇଁଆ ତ ସାହେବ କୋଠିରେ ମାସି ଆଠ ଟଙ୍କାରେ କାମ କରୁଥିଲା, କଣ ରଖି ଯାଇଚି ଯେ ! ଅଭକା ପାଞ୍ଚପାଞ୍ଚୁଟା ପିଲା, ପୁଣି ଶାଶୁ ବୁଢ଼ୀକି ନେଇ ବିଚରା କଣ କରିବ ? ମୁଁ ଦି ଦିନ ହେଲା ଭାବି ଭାବି କିଛି ଠିକଣା କରି ପାରୁ ନାହିଁ । ଘରେ ତ କଂସା ଖଣ୍ଡିକେତେ, ପୁଣି ଚକରାମାର ଗହଣା କେତୋଟି ସୁଦ୍ଧା ବନ୍ଧା ପଡ଼ିଚି ।"

"ଆଚ୍ଛା, ମୁଁ ପରା ତା ଭାବୁଚି । ଗରିବ ବିଧବାଟିର କଣ କରି ପାରିବା କୁହ ତ ?"

"ମୁଁ କାଲି ତାକୁ ଦେଢ଼ ସେର ଚାଉଳ, ଦି ଅଣା ପଇସା ଦେଇଥିଲି । ଛି, ସାତ ପେଟକୁ ସେତିକି ଅଣ୍ଟିବ ? ଚକରାମା ଦି ମାସର ଦୁଧଖିଆ ଛୁଆକୁ ଘେନି କା ଘରେ ପାଇଟି କରିବ ? ହରି ସାହୁ ଘରେ ବୁଝୁନ୍ତି କି ?"

"ମୁଁ କହୁଚି ଶୁଣ,—ତମେ ତା ପିଲାଟିକି ଦେଖିଲେ ମୁଁ ତାକୁ କାହା ଘରେ କାମ ଧରାଇଦିଅନ୍ତି; ଆଉ ଚକରକୁ କମାରଶାଳରେ ଦିନ ମଜୁରିରେ ଭର୍ତ୍ତି କରି ଦିଅନ୍ତି ।"

"ମୁଁ ସେ ପିଲାକୁ ରଖି ପାରିବି ଯେ ।"

"ଆଉ ଶିକରକୁ ରାଜଙ୍କ ସଙ୍ଗେ ମାଟିବୁହାରେ ଲଗେଇଦେବି । ବାକି ସୁଲଭ, ଦୁଲଭ, ଭଉଣୀ ଦିହେଁ ତମ ପାଖରେ ରହିବେ—ପିଲାକୁ ଦେଖିବେ । ତା ଶାଶୁକୁ ଏ ଥର ଖଣ୍ଡେ କମଳ କିଣିଦେବି । ଶୁଣିଚ ହେ, ତମ 'ଅନେଇଚ' ତମ କାନ୍ଥକୁ ପୁଅଟିଏ ପଠେଇଚନ୍ତି ।"

"ମତେ ମଦ୍ଧନା ମା ଆସି କହୁଥିଲା । ମୁଁ ତ ଖୋଜୁଥିଲି । ଆଜି ରେବ, ଚୋରି ଭାଇଟିଏ ଆସିଚ ।"

ରେବତୀ କୌତୂହଳୀ ହୋଇ କହିଲା, "କୋଉଁ ଭାଇ, ବୋଉ । ସେ ଯେ ମରି ଯାଇଥିଲା ?"

"ନା, ଆଉ ଗୋଟିଏ ।"

"କୁଆଡ଼େ ଥିଲା ? କିଏ ଆଣିଲୁ ? କେଉଁଠି ଅଛି ? କେବେ ଆସିବ ?"

"ରହ, ଯା ଖେଳ" କହି ତାରାମଣି ରନ୍ଧା ଘରକୁ ଗଲେ । ଚୁଲିରୁ ଦୁଧହାଣ୍ଡିଟି ଓହ୍ଲାଇ ଗିଲାସେ ଦୁଧ ଗରମ ହାତରେ ଦେଇ ନଗନା ମା କତକ ପଠେଇ ଦେଲେ । ସଙ୍ଗେ ସଙ୍ଗେ ଜଗନ୍ନାଥ ବଟୁଆରୁ ଦଓଟି ବଟିକା ଆଉ ପଲାଏ ମଧୁ ଦେଇ କହିଲେ, "କହିଦବୁ, ମଧୁ, ଅଦାରସରେ ଗୋଟିଏ ସଞ୍ଜେ, ଗୋଟିଏ ସକାଳେ ଖଲି ଖାଇବ । ମୁଁ କାଲି ଦଣ୍ଡଙ୍କୁ ଯିବି । ତାକୁ ବିଛଣାରୁ ଉଠାଇବାକୁ ମନା କରିବୁ ।"

ତାରାମଣି ସ୍ୱାମିଙ୍କ ସକାଶେ ଜଳଖିଆ ପରଷି ବାଉଁଶ ଶାଗ କେରାଏ ତୋଳି ଯାଇଥିଲେ । ହଠାତ୍ ଅପରିଚିତ ବାଳକଟିର କଣ୍ଠସ୍ୱର କର୍ଣ୍ଣରେ ବାଜିବାରୁ ଉଠି ପଡ଼ି ଭିତରକୁ ଧାଇଁ ଆସିଲେ; "ଆହା ! ଏଇ ପୁଅଟି !" କହି କର୍ଦ୍ଦମିତ-କଳେବର ରଘୁକୁ ପାଖକୁ ଟାଣି ଆଣିଲେ । ରଘୁ ତାରାମଣିର ସ୍ନେହାଞ୍ଚଳ ଆଶ୍ରୟ କରି ମାତୃଶୋକ ପାସୋରିଲା । ତାରାମଣି ଓ ଜଗନ୍ନାଥ ପୁତ୍ର ଯଦୁମଣି ଓ ନୀଳମଣିର ମୃତ୍ୟୁଶୋକ ପାସୋରିଲେ । ଆଉ ବେଶି ଖୁସି ହେଲା ରେବତୀ । ତାର ନାନୀ ବିଦେହିଁ ଶାଶୁଘରକୁ ଗଲାଦିନୁ ବସାରେ ସେ ଜାଣି ଏକୁଟିଆ । ରଘୁ, ରେବତୀ ଶୀଘ୍ର ପରସ୍ପରର ଅକୃତ୍ରିମ ଭାଇ ଭଉଣୀ ହୋଇଗଲେ ।

ଏହାର କିଛି ଦିନ ପରେ ଦିନେ ସରସ୍ୱତୀ 'ଅଳେଇଚ' ଘରକୁ ବୁଲି ଆଇଲେ । "ଏ ଅଳେଇଚ, ମତେ ଦେଖି କିଆଁ ପଳେଇଚ ହେ ?" କହି ସହାସ୍ୟବଦନା ସରସ୍ୱତୀ ପ୍ରଫୁଲ୍ଲମୁଖୀ ତାରାମଣିଙ୍କ ଖଟ ଉପରେ ବସି ପଡ଼ିଲେ । ରେବତୀ ମାଉସୀଙ୍କ ଦେହରେ ଲଥ କରି ନିଜର କ୍ଷୁଦ୍ର ଦେହଭାର ନିକ୍ଷେପ-ପୂର୍ବକ ଆନନ୍ଦ ପ୍ରକାଶ କରିବାକୁ ଲାଗିଲା ।

"କି ରେ ରଘୁ, ଭଲ ଅଛୁ ବାପ ?"—ଏହା ପଚାରିବା ମାତ୍ରେ ରଘୁ ଆନନ୍ଦ-ଉଜ୍ଜ୍ୱଳ ବଦନରେ 'ହଁ' କହି ବାବୁର ହାତ ଟାଣି ପିଣ୍ଡାକୁ ଚାଲିଗଲା । ଆଜି ତାଙ୍କ ଦୁଇ ଜଣଙ୍କର ଅନେକ ଦିନ ପରେ ଦେଖା । କେତେ କଥା ଅଛି, ନିର୍ଜନ ନ ହେଲେ କି ସେ ସବୁ କହିହେବ ! କିନ୍ତୁ ତାଙ୍କ ନିର୍ଜନତା ଭଗ୍ନ କରି

ଆସି ଉପସ୍ଥିତ ହେଲା ସୀତା । ବାବୁ ବିରକ୍ତ ହୋଇ କହିଲା, "ଯା ନା— ରେବ' ସଙ୍ଗେ କଥା କହିବୁ, ତୋର ଆମଠି କଣ ଅଛି ?"

"କଣ କଥା କହିବ, ମୁଁ ଶୁଣିବି ।"

"ହିଁ ତତେ ଶୁଣିବାକୁ ଦେବୁ, ଯା—ଚାଲିଯା ।"

"ଏତେ କାହିଁକି ତଡ଼ୁଚ ମ ? ଦେଖ ରେ ରଘୁ ।"

ରଘୁ କିନ୍ତୁ ବାବୁର ପକ୍ଷ ନେଇ କହିଲା—"ତୁ ଯା, ତୋ ସାଙ୍ଗ ସଙ୍ଗେ କଥା କହିବୁ; ଆମକୁ ବିରକ୍ତ କରୁଛୁ କାହିଁ ? ଆମେ କଣ ତତେ ଡାକୁଚୁଁ ?" ଏ ଥର ସୀତାର ଅଭିମାନ ହେଲା । ସେ ମୁହଁ ଫୁଲାଇ କହିଲା, "ଇସ୍, ରେବତୀ କାହିଁକି ମୋ ସାଙ୍ଗ ହେବ ମ ! ରେବ ତମ ସାଙ୍ଗ ।" ରଘୁ ଅଭିମାନିନୀକୁ ଆଦର କରି କହିଲା—"ହଉ ହଉ, ତୁ ଅମ ସାଙ୍ଗ; କିନ୍ତୁ ତୁ ଯେ ଖଣ୍ଡିଆଦାନ୍ତୀ ।" ସୀତା ଅଧିକତର ଅଭିମାନ ଓ ରାଗରେ କହିଲା—"ରହ ରେ ରଘୁ, ତତେ ଦେଖିବି ।" ତାହାର ବଡ଼ ବଡ଼ ଆଖିଯୋଡ଼ିକ ଅଶ୍ରୁରେ ଛଳଛଳ ହୋଇଗଲା । ରଘୁ ସ୍ନେହାଦରବ୍ୟଞ୍ଜକ ସ୍ୱରରେ ଅଭିମାନିନୀକୁ ଶାନ୍ତ କରି କହିଲା—"ଗେଲରେ କହିଲି ପରା, ତୁ ତ ସୁନାଲକ୍ଷ୍ମୀ ।" ସୀତା ତହୁଁ ଆଶ୍ୱସ୍ତ ହେଲା ।

ଘର ଭିତରେ ତାରାମଣି ଓ ହରପ୍ରିୟା ସୁଖ ଦୁଃଖର ଅନେକ କଥା ପକାଇଲେ । କଥା ପଡ଼ୁ ପଡ଼ୁ ତାରାମଣି କହିଲେ—"ତମେ ତ ଜାଣ ଅଛେଇଚ, ଯଦୁ ଜନା କିମିତି ଗରିବଗୁରୁବାଙ୍କୁ ବିନା ପଇସାରେ ଔଷଧ ଦିଅନ୍ତି ? ତାଙ୍କଠାରେ ବାରଣ ଅବାରଣ ନାହିଁ । ସେ ଦିନ ଦୁଲେଇ ହାଡ଼ୀଆଣୀକି ଜର ହେଇଥିଲା । ତା ଘରକୁ ଯାଇ ତାକୁ ଛୁଇଁ ଔଷଧ ଦେଇ ଆସିଲେ । ଘରକୁ ଅଇଲାକୁ ସଞ୍ଜ ହେଇଥିଲା । ମୁଁ କହିଲି, 'ହାଡ଼ିଆଣୀକି ଛୁଇଁଲ, ଗାଧୁଅ ।' ସେ ଟିକିଏ ହସିଦେଇ କହିଲେ, 'ମଣିଷକୁ ଛୁଇଁଲେ ଯଦି ମଣିଷ ଛୁଆଁ ହେଉଥାନ୍ତେ, ପୃଥିବୀ ରହନ୍ତା ନାହିଁ । ମୁଁ ଚିକିତ୍ସକ, ମୋ ପାଖରେ ହାଡ଼ୀ ପାଣ କଣ ?' ଏ ଥର ତାଙ୍କ ଭଉଜା ଆସି କେତେ ଗାଳି ଦେଇ ଯାଇଚନ୍ତି । କହିଲେ, 'ମାଣେ ଦି'ମାଣେ ଜମି କର । କୋଠାବାଡ଼ି କର । କବିରାଜୀ କଲୁ, ଏତେ ପଇସା କମେଇଲୁ, ସବୁ ପର ପିଣ୍ଡରେ ସାରୁଚୁ ।' ଭାଉଜଙ୍କି ପରା ସେ କହିଲେ, 'ମୋର ତିନଟା ଝିଅରୁ ଦି'ଟା ବାହା ହେଲେଣି; ସାନଟିକୁ ଉଠେଇ ଦେଲେ ତ ପାଇନ୍ତି ସଇଲା । ହାତ ଗୋଡ଼ ଥିବାଯାଏ ଖାଇବୁଁ, ଖୁଆଇବୁଁ ।"

"ଏମିତି କଲେ ବୁଢ଼ା କାଳକୁ କଣ କରିବ ? ମୁଁ ଦେଖୁଚି, ତମେ ତାଙ୍କ ସାଙ୍ଗକୁ ଯୋଡ଼ି ମିଳିଚ । ଏମିତି କର ନା—ଦି'ପଇସା ଆଗକୁ ସଞ୍ଚି ରଖ ।"

"ଯଦି ଆଜି ମରିଯିବୁଁ, ପଇସା ଭୂତ ଖାଇବ ତ ! ତା ଅପେକ୍ଷା ସେ କହନ୍ତି, 'ଏମିତି ସଞ୍ଚିବି, କେହି ଚୋରି ଦଗାବାଜି କରି ନେବେ ନାହିଁ । ସୁଧ ମୂଳ

କିଛି ହେବନି ।' ଖାଇନା କହିଲେ, 'କୋଉଠି ଜମା କରୁଚୁ ?' ଯଦୁନନା କହିଲେ, 'ଠାକୁରଙ୍କ କଥରେ; ତାଙ୍କ ଗନ୍ତାଘରୁ କିଏ କାଢ଼ିନେବ ?' ତାଙ୍କୁ କିଏ ବୁଝାଇବ ।"

ସରସ୍ୱତୀ ଶ୍ରଦ୍ଧାରେ କହିଲେ, "ସେଇଆଙ୍କୁ କହନ୍ତି ମହତ । ଭଉଣି, ତମର ବଡ଼ ଭାଗ୍ୟ—ଗୋଟିଏ ଦେବତା ପାଇଚ । ଦେଖା ନ ହୋଇଥିଲେ କି ଦେବତାର ମହିମା ହୋଇଥାନ୍ତା ।"

ତାରାମଣି ଧୀରେ କହିଲେ, "ହଁ ଭଉଣି, ସେ ଦେବତା ! କିନ୍ତୁ ମୁଁ ତାଙ୍କ ଗୋଡ଼ ତଳକୁ ସରି ନୁହେ । ଦଶ ବର୍ଷ ବେଳେ ବାହା ହୋଇ ଆସିଥିଲି । ତିନି ବର୍ଷ ମୋ ନନା ମରିଗଲେ । ଶାଶୁଙ୍କ ବାରଣ ନ ମାନି ମତେ ସେ ନିଜେ ପରିଶ୍ରମ କରି ଓଡ଼ିଆ ପଢ଼େଇଲେ । ଶାଶୁ କେତେ ମନା କଲେ, ଭୟ ଦେଖାଇଲେ; କହିଲେ—'ଅକାର୍ଯ୍ୟ କରୁଚୁ ।' ଶୁଣିଲେ ନାହିଁ, କହିଲେ ପରା—'ଭାତ ରାନ୍ଧି ପାରିଲେ ତମ ବୋହୂର ପାଇଟି ସରିବ ନାହିଁ । ମୁଁ ତାକୁ ମଣିଷ ଗଢ଼ିବି ।' ଶାଶୁ ଚିଡ଼ିକରି କହିଥିଲେ—'ମଣିଷ ଗଢ଼ୁଚୁ, କି ମାଙ୍କଡ଼ ଗଢ଼ୁଚୁ, ଗଢ଼ୁଥା ।' ବଡ ଯାଆଙ୍କର କେତେ ଥଟ୍ଟା ପରିହାସ ଶୁଣିଚି ।"

"କହିବା ଲୋକ ବଡ଼ ନୁହେ—ସହିବା ଲୋକ ବଡ଼ ।"

ସନ୍ଧ୍ୟାକୁ ସରସ୍ୱତୀ, ବାବୁ ଓ ସୀତା ଚାଲିଗଲେ । ରଘୁ ଲଜ୍ଜା-ସଙ୍କୋଚ-ଜଡ଼ିତ ଭାବରେ ଅଧୁଲି ଯୋଡ଼ିଏ ଓ ଦଶ ଟଙ୍କାର ଖଣ୍ଡିଏ ନୋଟ ତାରାମଣିଙ୍କ ହାତରେ ଗୁଞ୍ଜି ଦେଇ ଧୀର ସ୍ୱରରେ କହିଲା—"ସାଆନ୍ତାଣି, ସୀତା ଓ ବାବୁ ଦେଇଚନ୍ତି ।"

ତାରାମଣି ସିନ୍ଦୁକ ଫିଟାଇ ଥୋଇ ଥୋଇ ଭାବିଲେ—କିଏ କହେ, ରୁ ଅର୍ଜିତ ? ତୋର ତ ସଂସାରଯାକ ବନ୍ଧୁ ! ଛେଉଣ୍ଡ ପିଲାଙ୍କ ମହାପ୍ରଭୁ ଏହିପରି ବୁଝୁଥାନ୍ତି ।



# ଚତୁର୍ଥ ଅଧ୍ୟାୟ ।



ଦିନ ଦି'ପହର । ପୋଖରୀ ତୁଠ କଡ଼ ଚେକା ମାଙ୍କଡ଼ା ପଥର ଉପରେ ବସି ଟିକାଏ ହଳଦୀ ଓ ସୋରିଷତେଲ ନିଜ ଗୋଡ଼ ହାତରେ ମାଲିସ କରୁ କରୁ ଚମ୍ପାବୋଉ ଧରମୀ ଆଈଙ୍କ ଉଦ୍ଦେଶ କରି କହିଲା—"କି ଲୋ ନାନୀ, ଦିନ ଦି'ପହର ବେଳେ ଶାଗ କେଇଟିକ ସକାଶେ ଏ ପଟ ସେ ପଟ ହଉଚୁ, କଣ ରୋଷେଇ ବାସ ସରି ନାହିଁ ?"

"କାହୁଁ ସରିବ ଲୋ ମା ! ଗରିବର ଦୁଃଖ କଥା ଭଲା ପଚାରୁଚୁ । ମୋର ତ 'ଅଇଲା ଖିଅଗ, ବଇଲା ବାଆ' । ବେଳ ବାରି ଘଡ଼ିକ ତାଙ୍କ ଘରେ ପାଇଟି ସାରିଲେ ତେବେ ମୁଠେ ଜୁଟି; ପୁଣି ଖାଆଣ ପିଆଣ କଥା କିଏ ପଚାରେ ? ଘଣ୍ଟାରେ ତିନିଟା ନ ବାଜୁଣୁ ହାଜର ହବା କଥା । ଖଟି ଖଟି ହାଡ଼ରୁ ମାଉଁସ ଝଡ଼ିଲା ! ଟଙ୍କା ଚାରିଟାକୁ କିଏ ଏତେ ଖଟିବ ଲୋ ? ସେଥିରେ ପୁଣି ସାଆନ୍ତାଣୀର ଆମର ନିତି କଟର କଟର । ତା ଜାଳାରେ ମାସକୁ କୋଡ଼ିଏ ଚାକର ବାହାରୁଚନ୍ତି । ମୁଁ ବୋଲି ତିନି ବର୍ଷ ଚଳେଇଲିଣି । ତୋର ଭାଗ୍ୟ ଭାରି ଭଲ ଲୋ ।"

ଚମ୍ପାବୋଉ ମୁରୁକି ହସା ଦେଇ ଅଣ୍ଟାଏ ପାଣିକି ଓହ୍ଲାଇ ଯାଇ ପଥର ଉପରେ ଗୋଡ଼ ଥୋଇ ଘଷୁ ଘଷୁ କହିଲା—"ସତ କହୁଚୁ ଲୋ ନାନୀ, ଆମ ସାଆନ୍ତାଣୀ ପରା ହୀରାଟିଏ । ମୋ ବହାତରେ କଷ୍ଟ ବୋଲି କଣ ଜାଣେ ନା । ସେଇକ୍ଷଣି ଗାଳି ଦେବେ, ସେଇକ୍ଷଣି ପେଟି ଆଉଁସିବେ । ଚଢ଼େଇ ଛୁଆଟିର ପେଟବଥା ଜାଣିବେ । ଇମିତ ମଣିଷ କୋଟିକରେ ଗୋଟିଏ ।"

ଅପିଆ ମା ପହଞ୍ଚିଗଲା । ଦାନ୍ତକାଠି ଚୋବାଉ ଚୋବାଉ ଯେଉଁ ପାଣିରେ କୁଳି କଲା, ସେଇଠି ଛେପ ଖଙ୍କାର ମେଞ୍ଚାଏ ପକାଇ ଦେଇ ପୁଣି କଳେ ପାଟିରେ ଘେନୁ ଘେନୁ ଚମ୍ପାବୋଉକୁ ଚାହିଁ କହିଲା—"ତୋ ସାଆନ୍ତ ଝିଅ ସିଥିଆ ନାଗି ପରା ବର ଘର ହେଇଚି ? କେଉଁଠି, ଶୁଣେ ?"

"କଣ କହିବି ଲୋ ସେ କଥା ! ତାଙ୍କୁ ଏକା ସାଜେ । ଏ ଦଶ ବର୍ଷର ଛୁଆଟା ବର କରିଚନ୍ତି ବାଷଠୀ ବର୍ଷର ବୁଢ଼ା ବୃନ୍ଦାବନକୁ—ଭୁବନେଶ୍ୱର ଆଡ଼େ । ପୁଅକୁ ହଉ ହଉ ବାପକୁ ହବା କଥା ହେଲା ।"

ଏ ଥର ସ୍ତ୍ରୀଲୋକେ ମେଳ ହୋଇ ପଡ଼ିଲେ । ପ୍ରାୟ କୋଡ଼ିଏ ଜଣ ସ୍ତ୍ରୀଲୋକ—ବୃଦ୍ଧା, ମଧ୍ୟବୟସୀ, ଯୁବତୀ, ବାଳିକା, ଅଧିକାଂଶ ହାଟୁଆକୁଳର ।

ଜଣେ ଦୁଇ ଜଣ ମାହାନ୍ତିଆଣୀ ମିଶି ଗୋଟିଏ କ୍ଷୁଦ୍ର ସଭା ବସିଗଲା । କଏ ବେକେ ପାଣିରେ, କଏ ଅଣ୍ଟାଏ ପାଣିରେ, କଏ କୂଳରେ, କଏ ତୁଠରେ ନାନା ଅପରିଷ୍କାର ବସ୍ତ୍ରାଦି ଧୋଉଚନ୍ତି, କେହି କେହି ଦାନ୍ତ ଘଷୁଚନ୍ତି, ଜଣେ ଦି'ଜଣ ପିତ୍ତଳ ଓ ରସଖଣ୍ଡ ମୁଠା ମାଜିବାରେ ଲାଗିଚନ୍ତି । କିନ୍ତୁ ସମସ୍ତଙ୍କ କାନ ଚମ୍ପାବୋଉ କଥାରେ—ତାହାର ପ୍ରତ୍ୟେକ ବର୍ଣ୍ଣ ଯେପରି ମାଧୁର୍ଯ୍ୟବୃଷ୍ଟି । ବକ୍ତୃତା କରୁ କରୁ ଚମ୍ପାବୋଉକୁ ପ୍ରାୟ ଦି'ଟା ବାଜିଗଲା । ବକ୍ତୃତାର ସାରାଂଶ ଏହିପରି —

ତା ସାଆନ୍ତ ଚନ୍ଦ୍ରଶେଖର ଚୌଧୁରିଙ୍କ ଅସଲ ଘର ଭୁବନେଶ୍ୱର ଆଡ଼େ । ତାଙ୍କ ନାମ ଶଶିଶେଖର ଶତପଥୀ । ଶତପଥିଙ୍କ ସଂସାର ଅତି ଦରିଦ୍ର ଥିଲା । ଅନ୍ନ ବସ୍ତ୍ର ଅଭାବରେ କେବଳ ଗୁଡ଼ାଏ ଶ୍ଲୋକ ମୁଖସ୍ଥ କରି ଏ ଦୁଆର, ସେ ଦୁଆର ବୁଲି ତାଙ୍କ ପେଟ ପୂରିଲା ନାହିଁ । ବ୍ରାହ୍ମଣୀ ମଧ୍ୟ ଶିଶୁପୁତ୍ର ଚନ୍ଦ୍ରଶେଖର ଓ କନ୍ୟା ଲବଣୀକୁ ରଖି ଇହଧାମ ତ୍ୟଜି ଚାଲିଗଲେ । ପ୍ରୌଢ଼ ଶତପଥୀଏ ଟଙ୍କା ଅଭାବରେ ଦଶ ବର୍ଷର ନୂଆ ବୋହୂଟିଏ ଆଣି ପାରିଲେ ନାହିଁ—ମନ ଦୁଃଖ ମନରେ ମାରି ରହିଲେ । ଲବଣୀର ବିବାହବୟସ ହେଲା । ଶତପଥୀ କନ୍ୟାପଣରେ ପଚିଶ ଟଙ୍କା ପାଇ ଦୋକାନ କରି ବସିଲେ । ଦୋକାନ କରୁ କରୁ ହାତରେ ଦି' ପଇସା ହେଲା । ତହୁଁ ବାପ ପୁଅ କଟକ ବାହାରି ଆସି ଧାନ ଚାଉଳ ଦଣ୍ଡିଦାରି ଆରମ୍ଭ କଲେ । ଲକ୍ଷ୍ମୀ ପ୍ରସନ୍ନ ହେଲେ—ହାତରେ କିଛି ଟଙ୍କା ହେଲା । ଅତି କଷ୍ଟରେ ଚଳି ସେ କଟକରେ ଦୋକାନଟିଏ ବସାଇଲେ । ଏହିପରି କରୁ କରୁ ବୁଦ୍ଧିବଳରେ ଚନ୍ଦ୍ରଶେଖର କ୍ରମେ କ୍ରମେ ଜମିବାଡ଼ି ଓ କାଠ କାରବାର ଆରମ୍ଭ କଲେ । ମହାନଦୀକୂଳରେ କୋଠା ତିଆରି ହେଲା । ତା ପରେ ସେ ଧନ-ଟିଅ ସରସ୍ୱତୀଙ୍କୁ ଗୁଡ଼ାଏ ପଣ ଦେଇ ବିଭା ହେଲେ । କହନ୍ତି, ସ୍ତ୍ରୀ ପାଦରେ ଲକ୍ଷ୍ମୀ । ସତକୁ ସତ, ସରସ୍ୱତୀ ଘରେ ଗୋଡ଼ ଦେଲା ମାତ୍ରେ କାହୁଁ କାହୁଁ ଧନ ମାଡ଼ି ଆସିଲା । କାଳକ୍ରମେ ସାବିତ୍ରୀ, ସାରଳାର ଜନ୍ମ ହେଲା । ପୁଅ ନ ହେବାରୁ ସରସ୍ୱତୀ ନାନା ବାର ବ୍ରତ ଓ ପୂଜା ମାନସିକ କଲେ । ଶେଷକୁ ଠାକୁରେ ଦୟା କରି ଆଠ ବର୍ଷ ପରେ ପୁଅଟିଏ ଦେଲେ । ସେହି ବର୍ଷ ପିତେଇ ବୁଢ଼ୀ ଆସି ତାଙ୍କ ଘରେ ରହିଲା ।

କିନ୍ତୁ 'ଯେତେ ମାଠିକୁ ମାଠ, ସେହି ଦରପୋଡ଼ା କାଠ'—ସମ୍ପତ୍ତି ନ ଥିଲାବେଳେ ଚଉଧୁରିଏ ଯେମିତି ଚଳୁଥିଲେ, ଆଜି ମଧ୍ୟ ସେହିତା । ପଇସା ପତରକୁ ତାଙ୍କର ବଡ଼ ଆଖି—ମୋଟ ଖଦି ଛଡ଼ା ବିଲାତି ଧୋତି, କି ସରୁ ଚଦର କେବେ ପିନ୍ଧନ୍ତି ନାହିଁ; ସୋରିଷତେଲ ନେଡ଼ିଏ ଛଡ଼ା ସାବୁନ ଦି ଆଖିରେ ଦେଖି ପାରନ୍ତି ନାହିଁ । ତାଙ୍କର ଗୁମାସ୍ତା ଚାରି ଜଣ—ହରୁଷିଆ, ସତିଆ, ଦୀନା, ବିଚନା । ତାଙ୍କ ଭିତରୁ କେହି କେବେ ଧୋବ ଲୁଗାଖଣ୍ଡେ ପିନ୍ଧି ଆସିଲେ ସେ ଦିନ ତୁଣ୍ଡକୁ

ଚୁଗ୍ଲିକୁ ତା' ଉପରେ ସେ ଗରଗର ଖରଖର ହୁଅନ୍ତି । ଚାକର ଚାକରାଣୀଙ୍କୁ ତ ଦି' ଆଖିରେ ଦେଖି ପାରନ୍ତି ନାହିଁ । "କଅଁ, ଖଦଡ଼ା ପିନ୍ଧିଲେ ଯେଉଁ ମଣିଷ, ଦଶ ହାତ ଲମ୍ବ, ପାଞ୍ଚ ହାତ ଓସାର ଧୋବଧାଉଳିଆ ପିନ୍ଧିଲେ ବି ସେଇ ମଣିଷ । ଆମେ ଓଡ଼ିଆ, ଆମର ଏ କଣ—ଗୋଟାଏ କୋଟ୍, କାମିଜ୍, କୁଞ୍ଚଫେର !" ତାଙ୍କ ଆଗରେ ଚାକର ଚାକରାଣୀ ପାଟି ଫିଟାନ୍ତି ନାହିଁ । ଘଡ଼ିକ ଘରେ ଥିଲେ ସବୁଆଡ଼ ତୁନ୍‌ତାନ୍ ଥାଏ - ଛୁଞ୍ଚିଟିଏ ପଡ଼ିଲେ ଶବଦ ହେବ । ଘରଯା ଆଉ ପିଲାଏ ତାଙ୍କୁ ହାତେ ଡରିଥାନ୍ତି । ସାଆନ୍ତେ ଭଲ ଖିଆ ପିଆ ଦେଖି ପାରନ୍ତି ନାହିଁ । ଖଡ଼ା ସନ୍ତୁଳା, ଶାଗ ଦକେଇ ଖରଡ଼ା ହେଲେ, ଟିକେ ମୁଗପଇତଟା, ଟିକେ ସାରୁ ଶୁଖୁଆ ବେସରଟା ହେଲେ ତାଙ୍କର ଭାରି ଆନନ୍ଦ; କିନ୍ତୁ ସାଆନ୍ତାଣୀ ଓ ପିଲାଏଁ ତା ଦେଇ ଭାତ ଘେନ ପାରନ୍ତି ନାହିଁ । ଖିଆ ପିଆ ଘେନ ପ୍ରାୟ ପ୍ରତିଦିନ ସାଆନ୍ତାଣୀଙ୍କି ଟିକେ ବୋଲଣା ବାଜେ । ତାଙ୍କ ଛାତି ବି ପଥର ହେଲାଣି । ସେ ହସି ହସି ଉଡ଼େଇ ଦିଅନ୍ତି । ପିନ୍ଧା ପିନ୍ଧିରେ ଆଖି ପଡ଼ିଗଲେ ବୁଢ଼ା ଥରେ ଥରେ ଚିଡ଼ି ଉଠନ୍ତି । ମାଣିଆବନ୍ଧୀ, ବିଲାତି ମଖମଲ ଧଡ଼ି, ପାଟ ପିତାମ୍ବର ଅନ୍ୟ କେହି ପିନ୍ଧିବା ଦୂରେ ଥାଉ, ପୁଣ୍ୟ ପର୍ବ ହେଲେ ଅକାଳେ ସକାଳେ ସାଆନ୍ତାଣୀ ଆଉ ସୀତିଆ ଲୁଚି ଛପି ପିନ୍ଧନ୍ତି । ଦାନ ଧ୍ୟାନ ବାର ବ୍ରତ ସବୁ ଲୁଚେଇ ଲୁଚେଇ ହୁଏ, କିନ୍ତୁ ସାଆନ୍ତାଣୀଙ୍କର ବଡ଼ କଅଁଳ ମନଟି । ବୁଢ଼ା ମହାଜନୀ କରନ୍ତି । ଅନେକ ଗହଣା ବନ୍ଧକ ରଖନ୍ତି । ଲୋକେ ଆସି ହାରି ଗୁହାରି କଲେ, ସାଆନ୍ତାଣୀ କଣରେ କାନ୍ଦିଲେ ସାଆନ୍ତାଣୀ ଦୁଃଖ ସହି ନ ପାରି ଗୁପତେ ଗୁପତେ ହାତରୁ ସୁଧ ଦେଇ ମୁକୁଳେଇ ଦିଅନ୍ତି । ସଭିଏଁ ତାଙ୍କର ଗୁଣରେ ବଶ । ନୋହିଲେ ଚଉଧୁରିଙ୍କୁ କେହି ଭଲ ପାଇବା ଦୂରେ ଥାଉ, ତାଙ୍କ ନାଁ ଧଇଲେ ସେ ଦିନ ଭାତ ମିଳିବା କଷ୍ଟ ।

ଭିତରେ ତ ଇମିତି, କିନ୍ତୁ ବାହାର ବେଶଟି ବେଶ୍ ଅଛି । ନିତି ଦିନ ସନ୍ଧ୍ୟା ପୂଜା ନ କଲେ ସେ ପାଣି ଛୁଅଁନ୍ତି ନାହିଁ । କପାଳରେ, ଛାତିରେ ପଟାଏ ପଟାଏ ଚନ୍ଦନ ତିଳକ କାଟିଥାନ୍ତି; କଥ ପଦକେ 'ହରି ଶିବ' । ତଣ୍ଟି ଚିପି, ଅଧୀନର ଦାନା କାଟି ଅନାଥ ଛେଉଣ୍ଡଙ୍କ ଜମି ମାଣେ ହେଉ ପଛେ, ଚନ୍ଦବାଡ଼ି ପକାଇ ଉଡ଼େଇ ନବାକୁ ସେ ଭଲକରି ଜାଣନ୍ତି ।

ଚଉଧୁରିଏ ବଡ଼ ଝିଅକୁ ବାହା ଦେଇଛନ୍ତି ମାହାଙ୍ଗାରେ । ବରଟି ଦୋଭେଇ— ବୟସ ହୋଇଥିଲା ଦି'କୋଡ଼ି । ଟଙ୍କା ତିନିଶ ପଣ ଦେଇ ଦିବ୍ୟସୁନ୍ଦର ଝିଅଟି ବୋହୂ କରିନେଲେ । ସୁଖ ବୋଲି ସାବିତ୍ରୀ କିଛି ଜାଣି ନାହାନ୍ତି । ତାଙ୍କ ଘରେ ଖିଆ ପିଆ ନଅଣ୍ଟ ନାହିଁ--ପାଞ୍ଚ ପଚିଶ ବାଲା; ହେଲେ, ଶାଶୁ ବୋହୂଟିକି ଦେଖି ପାରନ୍ତି ନାହିଁ । ବଡ଼ଲୋକ ଘର ଝିଅ, କେଡ଼େ ସୁଖରେ ବଢ଼ିଥିଲା । ସେଠି ତାର

ରଘୁନାଥ ତାର ବାହ୍ମଣୀ କଥା ଶୁଣି ତାହା କତରେ ବସି ପୁଣି କହିଲା,—"ତମେ କଣ ମୋ କଥା ସତ ମଣିଲ ? ଆଚ୍ଛା, ମୁଁ କଣ ତମଦ୍ୱାରା ଚଡ଼ଲୋକଙ୍କ ନୁହେଁ ? ତୁମେ ଯେ ମୋର ଶତ ଶତ ପ୍ରାଣ ମାଣିକରୁ ଉତ୍କୃଷ୍ଟ ! ହଉ, ଚାଲ ଯିବା—ଦେଶକୁ ଯିବା । ମୁଁ ଭାବିଥିଲି, ତମେ ଗରିବ ଘରକୁ ଯିବାକୁ ମଙ୍ଗିବ ନାହିଁ ।"

ମାଧୁ ଅଭିମାନ-ଉଜ୍ଜ୍ୱଳ ଆଖିରେ କହିଲା—"ପୁଣି ସେମିତି କୁହ ନା, ମତେ ଭାରି କାଟେ । ମୋ ଜ୍ଞାତିକୁଟୁମ୍ବ ଦରିଦ୍ର ହେଲେହେଁ ମୋର ।"

ରଘୁନାଥ ଆନନ୍ଦରେ ପୂରିଯାଇ କହିଲା—"ଏତେ ଗୁଣ ଥିଲାକୁ ମୁଁ ଗୋଡ଼ତଳେ ପଡ଼ୁଛୁ ପରା !"

ମିନତି ମାରି ଲୁଗାପଟା ଧରିନ ସେ ଘରକୁ ଆସିଲା । ତାକୁ ମୋଟେ ସାତ ବର୍ଷ । ତାକୁ ଅନାଇଁ ରଘୁନାଥ କହିଲା—"ମା ଲୋ ! ତୋ ମାକୁ ମୁଁ ଘରୁ ତଡ଼ି ଦେଉଛୁ ଜାଣୁ ? ଏ ମା ଆମର ଆଉ ଦରକାର ନାହିଁ ।"

ମିନତି ବିଶ୍ୱାସ ନ କରି ହସି ହସି କହିଲା—"ହଁ ନା ? ଆମେ ତମକୁ ଆଗେ ତଡ଼ି ଦବୁନ ଯେ ! ଆମେ ତ କଟକ ଯିବା ।"

"ହଉ ତେବେ ମୁଁ ରଙ୍ଗୁନ୍ ଯାଉଚି" କହି ରଘୁନାଥ ବାହାରକୁ ଗଲା ।

ପିଲାମାନେ କଟକ ଯିବେ ଶୁଣି ନାଚ ନାଚ ବୁଲିଲେ ।



# ଏକତ୍ରିଂଶ ଅଧ୍ୟାୟ ।



ସୀତା ବାୟାଣୀ ହୋଇଛି । ସେ ନୀରବ, ଶୂନ୍ୟ ଦୃଷ୍ଟିରେ ଆକାଶକୁ ଚାହିଁ ଝିଙ୍କ ବନ୍ଧକୁ ଆଉଜି ଲୁହା ରେଲିଂରେ ମୁଣ୍ଡ ଥୋଇଛି । ତାହାର ଆଖିତଳେ ବିଶାଳ କଲିକତା ନଗରୀ—ଶତ ବିପଣୀ ଶୋଭିତ, ଶତ ସୁରମ୍ୟ ହର୍ମ୍ୟସମନ୍ୱିତ ଶତ ବିଦ୍ୟୁତାଲୋକଝଲସିତ । ଆଉ ରାଜପଥରେ ଅସଂଖ୍ୟ ଫେରିବାଲାର ଚିତ୍କାର, ଅସଂଖ୍ୟ ଯାନବାହନର ଶବ୍ଦ । ମିଠା ସୁଲୁସୁଲିଆ ପବନ ତା ଆଖି ଉପରେ ପଡ଼ିଥିବା ରୁକ୍ଷକେଶରାଶି ଉଡ଼ାଇ ନେଉଛି, ତା ମୁଣ୍ଡରୁ ଲୁଗା ଖସି ଖସି ପଡୁଛି, ଗୃହତଳେ ଶୋଇଛନ୍ତି ଦିବାକର । ଏ ଶଯ୍ୟାରୁ ସେ ଉଠିବେ କି ନା କିଏ ଜାଣେ ? କଡରେ ତାଙ୍କର ବସିଛି ଜଣେ ଇଂରାଜ ନର୍ସ । ସେ ରାତି ଜଗି ବସିଛି, ରୋଗୀର କ୍ଷୀଣ ଶ୍ୱାସ, କ୍ଷୀଣ ନାଡ଼ିସ୍ପନ୍ଦନ ଘଣ୍ଟାକୁ ଘଣ୍ଟା ଗଣୁଛି, ଆଉ ଥରେ ଥରେ ସୀତା ଆଡ଼କୁ ଚାହୁଁଛି । ସୀତା ଏକପ୍ରକାର ବାୟାଣୀ । ତା ସ୍ୱାମୀ ମରିବେ ସେ ଏ କଥା ଦୁଇଦିନ ହେଲା ଶୁଣିଛି । କଲିକତାର ବଡ଼ ବଡ଼ ଡାକ୍ତର-ମାନେ ମନ୍ତବ୍ୟ ଦେଇ ସାରିଲେଣି—ତା ସ୍ୱାମୀ ମରିବେ । ସୀତା ସେହି ଦଣ୍ଡରୁ ହତବୁଦ୍ଧି ହୋଇଛି । ଜଗତ୍ ତା ଆଖି ସାମନାରେ ଘୂରି ଯାଉଛି; ଆକାଶର ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ତା ଆଖି ସାମନାରେ ଘୂରି ଯାଉଛନ୍ତି । ସେ କଣ କରିବ ? ଏହି ଅସ୍ଥିର ଚିନ୍ତାରେ ତାହାର ପ୍ରାଣ ବ୍ୟାକୁଳ । ଇଚ୍ଛା ତାହାର ଦେହକୁ କିଏ ଶତଖଣ୍ଡ କରି ଯଦି ପ୍ରାଣଟା କାଢି ନିଅନ୍ତା, ସେ ମରନ୍ତା—ଆଉ ଦିବାକର ବଞ୍ଚନ୍ତେ । ତାହାର ପରମାୟୁ ଘେନି ଯଦି କିଏ ଦିବାକରଙ୍କୁ ଆଉ ଦଶ ବର୍ଷ ବଞ୍ଚାନ୍ତା, ସେ ଅକ୍ଲେଶରେ ଆଜି ମରନ୍ତା । ପୁରାଣରେ ଶୁଣିଥିଲା ସାବିତ୍ରୀ ସତ୍ୟ-ବାନଙ୍କୁ ବଞ୍ଚାଇଥିଲେ । ତେବେ ସେ କଣ ଦିବାକରଙ୍କୁ ବଞ୍ଚାଇ ପାରିବ ନାହିଁ ? ପରକ୍ଷଣରେ ମନେ କଲା ହାୟ ! ସତୀ ସାବିତ୍ରୀ ଆଉ ଅସତୀ ଅଲକ୍ଷଣୀ ସେ । ରଘୁନାଥ ତାହାର ମନେ ପଡ଼ିଲା । ପୂର୍ବ ସ୍ମୃତି ହୃଦୟପଟରେ ଜାଗ୍ରତ ହେଲା—ସେହି ନିବିଡ଼ ଜ୍ୟୋତ୍ସ୍ନା-ମଧୁର ନିଃଶବ୍ଦ ରଜନୀରେ ଅଶୋକ ତରୁତଳ ମୂଳେ ରଘୁନାଥ ପାଦରେ ବିବାହପୂର୍ବରୁ ଆତ୍ମସମର୍ପଣ, ତାହାର ଗଳାରେ ସୁନା ମୁଦ୍ରା ଅର୍ପଣ, ତାହାର ପାଦତଳେ ଦେହ ରୋଦନ; ଆଉ ସେ ଶେଷ ବିଦାୟ । ସବୁ ଗୋଟି ଗୋଟି ପ୍ରେତଲୋକରୁ ଉଠି ଆସିଲେ ପରି ! ତାର ଆଖି ଦଗ୍ଧ ହୋଇ ଗଲା; ଗ୍ରୀବା ଯୋଡ଼ିଗଲା; ସେ ଏତେ ପାପ କରିଛି, ଲୁଚାଇ ଲୁଚାଇ ରଘୁନାଥର ଛବି ନେଇ ପୂଜା କରିଛି, ସେ ପୁଣି ଦିବାକର ଲାଗି ଆଜି କପରି ପ୍ରାର୍ଥନା କରିବ ? ଭଗବାନଙ୍କୁ ଅଳି କରିବ ? କଣ ଅଛି ତା'ର ମହତ୍ତ୍ୱ, କଣ ଅଛି ତାର ସତୀତ୍ୱ ? ତଥାପି ସୀତା ଭାବେ—'ରଘୁନାଥ କିଏ ? ନାରୀର ଭ୍ରାନ୍ତି କଣ କ୍ଷମଣୀୟ ନୁହେ ?

ଦିବାକର ତାହାର ଧର୍ମତଃ ସ୍ୱାମୀ, ଦିବାକର ତାର ଇଷ୍ଟଦେବତା ଇହପରକାଳର ମୁକ୍ତି। ସେ ଦିବାକର ବିନା ବୈକୁଣ୍ଠର ରାଜଭୋଗ ସୁଦ୍ଧା ଲୋଡ଼େଁ ନାହିଁ।

ଭାବନା ଆବେଗରେ ସୀତା ଉଠିଲା, ଧୀରେ ଧୀରେ ଯାଇ ସ୍ୱାମୀର ମୁଣ୍ଡ-କଡରେ ଛିଡ଼ା ହେଲା। କେତେ ଦିନ ହେଲା ତା ମୁଣ୍ଡରେ ତେଲ ବାଜି ନାହିଁ, ଆଖି ଗାଡ଼ ଗାଡ଼ ପଶିଯାଇଛି, କେତେ ଦିନ ହେଲା ଭାତ ପାଣି ସେ ଛାଡ଼ିଲାଣି। ତାହାର ବସନ ଭୂଷଣ ବିଶୃଙ୍ଖଳ। ଉନ୍ମାଦିନୀ ପରି ତାହାର ରୂପ ବିକଟ। ତାକୁ ଚାହିଁ ଇଂରାଜ ନର୍ସ ମିସେସ୍ ଉଆଲସ୍ କରୁଣାର୍ଦ୍ର କଣ୍ଠରେ ସାନ୍ତ୍ୱନା ଦେଇ ଅନେକ କଥା କହିଲେ। ସେ ମଧ୍ୟ ବିଧବା ହୋଇଥିଲେ, ଯୌବନରେ ପ୍ରଥମ ସ୍ୱାମୀକୁ ହରାଇଥିଲେ। ବିଧବାର ଦୁଃଖ କଣ ସେ ଜାଣନ୍ତି। ସୀତା ଆଶ୍ଚର୍ଯ୍ୟ ହୋଇ କହିଲା—"ମେମ୍ ସାହେବ! ତମର ସ୍ୱାମୀ କେଉଁ ଡାକଘରେ କାମ କରନ୍ତି ତମେ କହୁଥିଲ?"

ମିସେସ୍ ଓ୍ୱାଲସ୍ ଦୁଃଖିତ ହୋଇ କହିଲେ—"ଏ ମୋର ଦ୍ୱିତୀୟ ସ୍ୱାମୀ, ଆଦୌ ଭଲ ଲୋକ ନୁହେ। ଅତିରିକ୍ତ ମଦ ଖାଏ। ସେଥିପାଇଁ ମୁଁ ତାକୁ ତ୍ୟାଗ କରିଚି; କିନ୍ତୁ ମୋର ପ୍ରଥମ ସ୍ୱାମୀ ଖୁବ୍ ଭଲ ଲୋକ ଥିଲେ।"

ସୀତା ଅବାକ୍ ହୋଇ କିଛିକ୍ଷଣ ରହିଲା। କଥା କହିବାକୁ ତାହାର ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ। ସେ ଦିବାକରର ମୁଣ୍ଡ କଡରେ ବସି କାନ୍ଦିଲା। ରାତି ଗୋଟାକ କଟିଗଲା—ସୀତା ସେହି ଏକାସନରେ। ପାହାନ୍ତାରେ ଦିବାକର ଆଖି ମେଲାଇ ସୀତାକୁ ମୁଣ୍ଡ ଉପରେ ବସିଥିବା ଦେଖି ଆଗ୍ରହରେ ଚାହିଁଲେ। ମିସେସ୍ ଉଆଲ୍‌ସ କହିଲେ—"ମିସେସ୍ ମିଶ୍ର ରାତିଯାକ ଚେଇଁଚନ୍ତି, କାନ୍ଦୁଚନ୍ତି। ଦିବାକରଙ୍କ ଆଖିରୁ ପ୍ରବଳବେଗରେ ଦୁଇଧାର ଲୁହ ଗଡ଼ିଗଲା। ତାଙ୍କର ସବୁ ପୂର୍ବସ୍ମୃତି ମନେ ପଡ଼ିଲା। ସୀତା ଯେ ତାଙ୍କର ଜୀବନତାରା, ଯାହା ଲାଗି ସେ ଜଗତରେ ମଣିଷ ହେଲେ, ସେହି ସୀତା ଯେ ତାଙ୍କର କଅଣ, ଏ କଥା ସେ କହି ପାରିଲେ ନାହିଁ। ସୀତା ସ୍ୱାମୀ ଆଖିରୁ ଲୁହ ପୋଛି ତାଙ୍କ ପାଖରେ ଲୋଟିପଡ଼ି 'ଭେ' 'ଭେ' ହୋଇ କାନ୍ଦିବାକୁ ଲାଗିଲା। ନର୍ସ ମିସ୍ ଗୁପ୍ତ ଆସି ମିସେସ୍ ଉଆଲସ୍‌ର ସ୍ଥାନ ଅଧିକାର କଲେ। ତାଙ୍କ ସଙ୍ଗେ ସଙ୍ଗେ ରୋଗୀ ଦେଖିବାକୁ ଜ୍ୟୋତିଷ ଓ ଗଗନ ଡାକ୍ତର ଆସିଲେ; କିନ୍ତୁ ସୀତା ଲଜ୍ଜାହୀନଭାବରେ ସେଇଠି ବସି ରହିଲା। ଆଜି ସେ ଆଉ ଉଠିବ ନାହିଁ। ତାହାର ସମୁଦାୟ ବଳ ଏକାଠି କରି ସେ ଭଗବାନଙ୍କୁ ଡାକିବ। ଭଗବାନ୍ ଯଦି ତା ସ୍ୱାମୀକୁ ବଞ୍ଚାନ୍ତି! କିଏ ଜାଣେ କାହାର ପରମାୟୁ କେତେ? ଡାକ୍ତର ବାବୁ କଣ ପ୍ରଭୁ ଯେ ପରମାୟୁ କଥା ଜାଣିବେ?

ଗୋବିନ୍ଦବାବୁ ଆସି ସାଆନ୍ତାଣୀଙ୍କୁ ଅନ୍ୟ ଘରକୁ ନେଇଗଲେ । ଡାକ୍ତରମାନେ ରୋଗୀକୁ ପରୀକ୍ଷା କରିବାକୁ ବସିଗଲେ । ସୀତା ଆରଘରେ ଚଉଁରାରେ ପଡ଼ି ମୂର୍ଚ୍ଛିତା ହେଲା । ସେ ଆଉ କେତେ ସହନ୍ତା ? ନିଜର ପାପ ଲାଗି ସେ ଆଉ କେତେ ପ୍ରାୟଶ୍ଚିତ୍ତ କରନ୍ତା ? ସ୍ୱାମୀର ପ୍ରାଣ ଲାଗି ସେ କାଳୀଘାଟର କାଳୀଙ୍କ ନିକଟରେ ମାନସିକ କରିଛି । ସାତଦିନ କଠୋର ଉପବାସର ପଣ କରିଛି । ସ୍ନାନ କରି ତାଙ୍କର ପାଦୁକମାନ ସେବା କରି ପଡ଼ି ରହିଛି । ଯଦି ମା କାଳୀ ତା ସ୍ୱାମୀକୁ ବଞ୍ଚାନ୍ତି । ସେ ବହୁତ ବଳିଦାନ ମାନସିକ କରିଛି । କିନ୍ତୁ ମା କାଳୀ କଣ ଶୁଣୁଛନ୍ତି ? ତାଙ୍କ ଉପରେ ସୀତା ଏକାନ୍ତ ଲକ୍ଷ୍ୟ ରଖି ଗଡ଼ଗଡ଼ କରି ପ୍ରାର୍ଥନା କରୁଛି, ଗଡ଼ଗଡ଼ କାନ୍ଦୁଛି । ସେ ଆଉ କେତେ ସହନ୍ତା ? ତାହାର ଦେହ ଭାଙ୍ଗିପଡ଼ି ସେ ଅଚେତନ ହୋଇ ପଡ଼ିଲା ।

ଯେତେବେଳେ ଆଖି ମେଲାଇଲା, ଦେଖିଲା,— କଡ଼ରେ ଜଣେ ଅପରିଚିତ ସ୍ତ୍ରୀଲୋକ ବସି ତା ମୁଣ୍ଡକୁ ପଙ୍ଖା କରୁଛି । ସେ ବଡ଼ାଙ୍କ ଭଳି ତାକୁ ଚାହିଁଲା, କିଛିକ୍ଷଣ ପରେ କହିଲା, "କିଏ ?" ରମଣୀ ପଙ୍ଖା ଥୋଇ ଦେଇ ତା ଗୋଡ଼ ତଳେ ପଡ଼ି କହିଲା, "ମୁଁ ଫୁଲ, ବୋହୂ ସାଆନ୍ତାଣି ! ମୁଁ ସେହି ପାପୀୟସୀ, ମତେ କଣ ତମେ କ୍ଷମା କରିବ ?" ସୀତା ଫିଙ୍ଗି ପଡ଼ି ତା ଗଳାରେ ବାହୁ ଦୋଟି ଛନ୍ଦି ଦେଲା । ବର୍ତ୍ତମାନ କ୍ଷମା ଦେବାର ସମୟ ତାର ନ ଥିଲା, ଅକୂଳ ସାଗରରେ ସେ ଭାସୁଥିଲା । ସମ୍ମୁଖରେ କୁଟା କେଉଁଏ ଧରି ପକାଇଲା ପରି ? ସେହି ନିବିଡ଼ ଆଶ୍ଳେଷ ମଧ୍ୟରେ ଦୁହେଁ ଭଉଣୀ ବହୁତ କାନ୍ଦିଲେ । ଫୁଲ ଆପଣାର ସବୁ କଥା ଗୋଟି ଗୋଟି କହି ଚାଲିଲା । କିନ୍ତୁ ଉଦାସିନୀ ସୀତା କାନକୁ କିଛି ଗଲା ନାହିଁ । ସେ ଦିବାକର ଚିନ୍ତାରେ ମୃତବତ୍ ପଡ଼ି ରହିଲା ।

ଦିବାକର କଡ଼ରେ ଡ଼କ୍ଟର ସେନ୍ ବସିଥିଲେ । ଆଜି ସେ ଶଳାର ଶୁଶ୍ରୂଷା ଭାର ନେଇ ବସିଛନ୍ତି, ଆଉ ଭାଇଙ୍କି ଜଗିଛି ଫୁଲ । ଡାକ୍ତର, ନର୍ସ ସମସ୍ତେ ନିରାଶ ହୋଇ ଯାଇଛନ୍ତି । ଅନ୍ତିମ ମୁହୂର୍ତ୍ତରେ ବୈଦ୍ୟ କଣ କରିବେ ? ଦିବାକରର ପ୍ରାଣ ଯାଉଛି, ଆସୁଛି । ତଥାପି ସେ ଫୁଲକୁ ଓ ତାର ସ୍ୱାମୀକୁ ଦେଖି ଆଶ୍ୱସ୍ତ ହେଲା । ତାହାର କ୍ଷୀଣକଣ୍ଠରୁ ବାହାରିଲା - "ତାରକ ବାବୁ—ଆପଣ—ଦେବ—ତା ।" ଫୁଲ ନୀରବରେ ଅଶ୍ରୁପାତ କରୁଥିଲା, ଅମୃତା ସୀତା ପାଦତଳେ ବସିଥିଲା ।

ମାମୁଁ ଓ ରଘୁନାଥ ଆସି ଦିବାକରର ଖଟ କଡ଼ରେ ବସିଲେ । ଆଜି ଛିନ୍ନ ପରିବାରର ମିଳନ । ମୃତ୍ୟୁ ନିକଟରେ ଆଜି ବହୁକାଳରୁ ବିଭିନ୍ନ ଆତ୍ମା କେତୋଟିର ଅପୂର୍ବ ସଂଯୋଗ । ପରିବାରର ସମସ୍ତେ ଦିବାକରକୁ ଘେରି ବସିଲେ । ସୀତାର ରୂପ ଚାହିଁ ରଘୁନାଥର ସର୍ବାଙ୍ଗ ଶିହରି ଉଠିଲା । ସୀତା ଦିବାକରକୁ ଏତେ ଦୂର ପ୍ରେମ କରେ ? ହଁ, ଏହା ଯେ ବିବାହର ବଜ୍ରବନ୍ଧନ, ଏହା ଯେ ଦାମ୍ପତ୍ୟର ପବିତ୍ର ମିଳନ । ମୂର୍ଖ ରଘୁନାଥ ! ଜଗତ ବଡ଼ କଠିନ ।

ତାରକର ସମସ୍ତଙ୍କୁ ଗୃହିଁଲେ, ଅମୂଲ୍ୟ, ସୀତାଙ୍କୁ ଅନାଇଁ ତାଙ୍କର ହୃଦୟ ବିଦୀର୍ଣ୍ଣ ହେଉଥିଲା । ସେ କଣ କହିବେ କହିବେ ହୋଇ କହି ପାରୁଲେ ନାହିଁ । ଜିଭ ଅବଶ ହୋଇ ଆସିଥିଲା, କିନ୍ତୁ ସୀତା ବୁଝିଲା ସ୍ୱାମୀର ପ୍ରାଣର କଥା । ତାଙ୍କର ପ୍ରୀତ ଯେ ତାର ପାଇଁ କରନ୍ତ ହେଉଛି, ସେ ଏ କଥା ଅନୁଭବ କଲା । ସେ ତଳଲା ଲୁହରେ ବୁଡିଗଲା ।

ଦ୍ୱାର ମେଲା ହୋଇଥିଲା । କବାଟ କଡରେ ଠିଆ ହୋଇ ଏ ମିଳିତ ପରିବାରକୁ ଏକ ଧ୍ୟାନରେ ଗୃହିଁ ରହିଲେ ଜ୍ୟୋତିଷ ଡାକ୍ତର । ସେ ଅନେକ ମୃତ୍ୟୁଦୃଶ୍ୟ ଦେଖିଛନ୍ତି, ମୁମୂର୍ଷୁର ଶଯ୍ୟାପାର୍ଶ୍ୱରେ ଆତ୍ମୀୟ ସ୍ୱଜନର କରୁଣ ରୋଦନ ଶୁଣିଛନ୍ତି; କିନ୍ତୁ ଏପରି ସମ୍ମିଳନ କଦାପି ଦେଖି ନ ଥିଲେ । ଆଜି ତାଙ୍କ ଆଖିରୁ ଗୋଟିଏ କଠିନ ଆବରଣ ଅପସାରିତ ହେଲା । ସେ ବିଶେଷତଃ ଗୃହିଁ ରହିଲେ ଫୁଲକୁ—ପୂର୍ବ ପ୍ରେୟସୀ ଫୁଲମଣ୍ଡଳୀଙ୍କୁ ଆଉ ତାହାର ସ୍ୱାମୀ ଡାକ୍ତର ତାରକନାଥ ସେନଙ୍କୁ । ତାଙ୍କର ପୂର୍ବ ଜୀବନର ଜଘନ୍ୟ ଚିତ୍ର ଆଜି ଆଖି ଆଗରେ ଦିଶିଗଲା । ସେହି ରାତିର ନିମନ୍ତ୍ରଣ, ଫୁଲ ସହିତ ଗୋପନରେ ଦେଖା, ଯୂଥିକାର କୌଶଳରେ ଫୁଲକୁ ଅପହରଣ କରି ତାସହିତ ସ୍ୱୈରବର୍ଷ ଏହି ଘରେ, ଏହି ସ୍ଥାନରେ ଅବସ୍ଥାନ । ସେ ଘରର ପ୍ରତ୍ୟେକ କାନ୍ଥ ବାଡ଼ ଫୁଲ ଚିହ୍ନେ, ପ୍ରତ୍ୟେକ ସ୍ଥାନରେ ନିଜ ହାତରେ ସେ ନାନାବିଧ ଦ୍ରବ୍ୟ ସଜାଇ ରଖିଥିଲା, ଆଉ ଏ ଗୃହ ତଳରେ ତାଙ୍କ ସହିତ ସେ ବାସ କରିଥିଲା । ଆଜି ସେହି ଦୁଷ୍ଟରମଣୀର ଅପୂର୍ବ ପରିବର୍ତ୍ତନ, ସେ କୁଳକଳଙ୍କିନୀର ଆଶ୍ଚର୍ଯ୍ୟ ସ୍ୱାମୀଭକ୍ତି ସ୍ୱଚକ୍ଷୁରେ ଦେଖି ଏକାବେଳେ ସ୍ତମ୍ଭିତ ହୋଇଗଲେ । 'ଇଏ ଯେ ଫୁଲ', ଏହା ତାଙ୍କର ଆଖିରେ ଦେଖି ସୁଦ୍ଧା ବିଶ୍ୱାସ ହେଉନାହିଁ । ତାଙ୍କର ହୃଦୟରୁ ସ୍ୱତଃ ତାରକ ବାବୁ ପ୍ରତି ଭକ୍ତିର ଉଚ୍ଛ୍ୱାସ ଉଠିଲା । ସେ ମଧ୍ୟ ପୁରୁଷ, ସେ ଜଣେ ବେଶ୍ୟାକୁ ଘରଣୀ କରି ପାରିଛି, କୁଳଟାକୁ ପତିବ୍ରତାର ସମ୍ମାନ ଦେଇଛି, ଆଉ ସେ ନିଜେ କରିଛି କଣ ? ଶତ ଶତ କୁଳକାମିନୀର ସର୍ବନାଶ କରିଛି, ଶତ ଶତ ନିସ୍ସହାୟ ଅବଳାର ଧ୍ୱଂସପଥ ପ୍ରଶସ୍ତ କରିଛି । ଏହି କଣ ତାର ଜୀବନର ଉଦ୍ଦେଶ୍ୟ ? ବ୍ରାହ୍ମଣକୁଳରେ ଜନ୍ମଲାଭ କରି ଏହି କଣ ତାର ସ୍ୱଧର୍ମ ? ତାହାର ହଲ୍‌ଡ଼ାର ମୁଖଚ୍ଛବି ମନେ ପଡ଼ିଗଲା । ସେ ସେହି ରୂପବତୀ ଇଂରେଜ କନ୍ୟାକୁ ପାପସାଗରରେ ଭସାଇଥିଲା । ସେହି ଦିନୁଁ ନାରୀ ସର୍ବନାଶ ହେଲା ତା ଜୀବନର ବ୍ରତ । କୁକ୍ଷଣରେ ସେ ବିଲାତ ଯାତ୍ରା କରିଥିଲା, କୁକ୍ଷଣରେ ମଦ୍ୟ ସହିତ ସ୍ନେହ ସ୍ଥାପନ କରିଥିଲା, ତାର ଜୀବନ ଗୋଟାକ ପାପରେ କଟିଗଲା । ନିସ୍ସହାୟା ରକ୍ତିମା' କୁଳବତୀ 'ଜ୍ୟୋତ୍ସ୍ନା', ବିଧବା 'ଇନ୍ଦୁବାଳା' ଠାରୁ ଆରମ୍ଭ କରି 'ଯୂଥିକା', 'ଫୁଲ' ଇତ୍ୟାଦି କେତେ ରମଣୀର ଯେ ସେ ସର୍ବନାଶ ନ କରିଛି ? ଅନୁତାପରେ ତାହାର ପାପିଷ୍ଠ ବକ୍ଷ ଦଗ୍ଧ ହେବାକୁ

ଘଟିଲା । ସେ ଗୃହରେ ପ୍ରବେଶ କଲା । ତାକୁ ଦେଖି ଫୁଲ ମୁଣ୍ଡ ତଳକୁ କଲା । ଲଜ୍ଜାରେ ତା ଦେହରୁ ଶ୍ରମ ଝାଳଟିଏ ବହିଗଲା । ଜ୍ୟୋତିଷ ତାରକ ବାବୁଙ୍କୁ ଅଭିବାଦନ କରି ଆସନଗ୍ରହଣ କଲେ । ରୋଗୀର ଡାହାଣ ହାତ ଧରି ନାଡ଼ି ପରୀକ୍ଷାରେ ନିବିଷ୍ଟଚିତ୍ତ ହେଲେ । ମାୟା ତାଙ୍କୁ ଗୃହିଁଚା ମାଝେ ତାର ଫୁଲ କଥା ମନେ ପଡ଼ିଗଲା । ସେ ସମସ୍ତଙ୍କ ଉପରେ ଥରେ ଏ ମୁଣ୍ଡରୁ ସେ ମୁଣ୍ଡ-ଯାଏ ଆଖି ବୁଲାଇ ଦେଲା । ଖଟ ମୁଣ୍ଡ ଉପରେ ସୀତା—ତା ସ୍ୱାମୀର ପୂର୍ବ ପ୍ରଣୟିନୀ, ଦୁହିଙ୍କର ଅପୂର୍ବ ସମ୍ବନ୍ଧ—ଅତ୍ୟାଶ୍ଚର୍ଯ୍ୟ ପ୍ରେମକାହାଣୀ ସେ ବାରଂବାର ତା ସ୍ୱାମୀଠାରୁ ଶୁଣିଛି; କିନ୍ତୁ ଆଜି ସେହି ରଘୁନାଥ ସୀତା ମଧ୍ୟରେ ସୁମେରୁ କୁମେରୁର ପ୍ରଭେଦ । ଆଉ ସେ ଯୋଡ଼ିକ ଜୀବନ ବଳି, ଆଉ ଯୋଡ଼ିଏ ଜୀବନ ଲତିକାକୁ ଆଶ୍ରୟ କରିଛନ୍ତି । ଗୋଟିକ ସେ ନିଜେ, ଆଉଟି ଦିବାକର । ମଦ୍ୟପାୟୀ ପାଷଣ୍ଡ ନରପଶୁ ସୀତାରୂପୀ ପରଶମଣି ସ୍ପର୍ଶରେ ଏବେ କଷିତ କାଞ୍ଚନ, କିନ୍ତୁ ତହିଁ ବଳି ଆଶ୍ଚର୍ଯ୍ୟ ତାରକନାଥ, ଫୁଲମଞ୍ଜରୀ ଓ ଜ୍ୟୋତିଷ । ଧନ୍ୟ ତାରକ ବାବୁ ! ତୁମେ ଚିରଯନ୍ତ୍ରଣାକୁ ଚିରଯଶ ଦାନ କରିଛ, ପାପପଙ୍କ-ଲିପ୍ତା ଶୁକଶିକୁ ସୁରଭିରେ ପରିଣତ କରିଛ ତୁମେ ଅହଲ୍ୟା ପାଷାଣକୁ ପାଦ ସ୍ପର୍ଶରେ ପବିତ୍ର କରିଛ ! ତୁମରି କଥା ଠିକ ! ମାନବାତ୍ମା ସୁବର୍ଣ୍ଣ ! ନିଆଁରେ ପଡ଼ିଲେ ତାର ଖାଦ ନଷ୍ଟ ହୁଏ, ତୁମେ ଆତ୍ମାକୁ ଚିହ୍ନିଛ । ଏହିପରି ମନେ ମନେ ଚିନ୍ତା କରି ମାୟା ରଘୁନାଥ ସଙ୍ଗେ ଘରକୁ ଫେରିଲା ।

ଗାଡ଼ି ଭିତରେ ରଘୁନାଥ କହିଲା—"ଦେଖିଲ ମାୟା ! ଅଦ୍ଭୁତ ଦୃଶ୍ୟ ।"

ମାୟା କହିଲା, "ସବୁ ସ୍ୱାଭାବିକ । ପ୍ରକୃତିରେ ପୁରୁଷ ଯାହା, ସ୍ତ୍ରୀ ତାହା । ଦୁଷ୍ଟଚରିତ୍ର ଦିବାକର ସୀତାରନ୍ ସଂଯୋଗରେ ସୁବର୍ଣ୍ଣ ହୋଇଚି, ଦୁଷ୍ଟଚରିତ୍ରା ଫୁଲମଞ୍ଜରୀ ତାରକମନ୍ତ୍ରବଳରେ ସ୍ୱର୍ଗର ଦେବୀ ହୋଇଚି । କେବଳ ରହିଚି ସେ ହତଭାଗ୍ୟ ଜ୍ୟୋତିଷ ।"

"କିନ୍ତୁ ଆଉ ଗୋଟିଏ କଥା ଯେ ତୁମେ ଛାଡ଼ିଦେଲ । ଏ ହତଭାଗା ଅର୍ଚ୍ଚିତ ରଘୁନାଥ ଯେ ମାୟାମୟୀର ମୋହିନୀ ମନ୍ତ୍ରରେ—"

ମାୟା ବାଧା ଦେଇ କହିଲା—"ହଁ, ମୁଁ ପରା ତମକୁ ମେଣ୍ଢା କରିଚି ।"

ରଘୁନାଥ ଲଜ୍ଜା ସହିତ କହିଲା—"ତୁମେ ମୋର ରକ୍ଷା କବଚ, ତୁମେ ମୋର ପରମାଶ୍ରୟଦାୟିନୀ ! ନୋହିଲେ ମୁଁ ଜ୍ୟୋତିଷଠାରୁ ଊଣା ହତଭାଗ୍ୟ ହୋଇ ନ ଥାନ୍ତି ।"

ମାୟା – "ଆଚ୍ଛା, ମତେ 'ଥାଙ୍କସ' (ଧନ୍ୟବାଦ) ଦିଅ ।"

ହନଫ୍ ଆସି ଖବର ଦେଲା—ଜ୍ୟୋତିଷ ଡାକ୍ତର ଦାଣ୍ଡ ଘରେ ଅପେକ୍ଷା କରିଛନ୍ତି । ରଘୁନାଥ ବ୍ୟସ୍ତ ହୋଇ ଦିବାକରର ସମ୍ବାଦ ଶୁଣିବାକୁ ଚାଲିଲା

ଓଲ୍ଟାଇଗଲା । ଜ୍ୟୋତିଷ ରଘୁନାଥଙ୍କୁ ଆଗେ ଅଭିବାଦନ କରି ଗୋଟିଏ ସୁନ୍ଦର ହାତିଦାନ୍ତର ବାକ୍ସ, ରେଶମ ରୁମାଲ ମୋଡ଼ାରୁ କାଢ଼ି ମେଜ ଉପରେ ଥୋଇଦେଲେ । ରଘୁନାଥ ବିସ୍ମୟରେ ଚାହିଁଥିଲେ । ତାଙ୍କୁ କହିବାକୁ ଅବସର ନ ଦେଇ ଜ୍ୟୋତିଷ କହିଲେ—"ମହାଶୟ ! ଏ ବାକସ ଭିତରେ ପଚଶ ହଜାର ଟଙ୍କାର ଗୋଟିଏ ଦାନପତ୍ର ଅଛି । ତାହା ମୁଁ ତୁମର ହାତରେ ମିସେସ୍ ସେନ୍‌ର ଦେବୋପମ ସ୍ୱାମୀଙ୍କୁ ଦାନ କରିବାକୁ ଆସିଛି । ମୁଁ ମର୍ଖ ! ପାପିଷ୍ଠ ! ସେ ମହତ୍ ଦେବତା ! ମୋର ଅପରାଧମୟ ଜୀବନର ଆଜଠାରୁ ଅବସାନ ହେଲା । ଏଥର ଜୀବନ ପରିବର୍ତ୍ତନ ପାଇଁ ମୁଁ ବଦ୍ରିକା ଆଶ୍ରମରେ ଗୁରୁଦୀକ୍ଷା ନେବି । ମୋର ଯଥେଷ୍ଟ ଅନୁତାପ ହୋଇଛି ।"

ରଘୁନାଥ ଜ୍ୟୋତିଷ ଡ଼ାକ୍ତରର ଏ ଅସମ୍ଭବ କଥା ଶୁଣି ଆକାଶରୁ ଖସିଲା ପରି ବୋଧ ହେଲା । ଦଶ ଦିନ ତଳେ ଯେ ତାଠାରୁ ଅର୍ଥର ତୋଡ଼ା ଗ୍ରହଣ କରିଥିଲା, ସେ ଆଜ ସ୍ୱହସ୍ତରେ ତାହାର ପାଞ୍ଚଗୁଣ ଅର୍ଥ ଯେଜ ଉପସ୍ଥିତ । ଏ କଣ, ଭେଲକି ନା କୌଣସି ନ୍ତ୍ରର ପ୍ରତାରଣା ?

ରଘୁନାଥଙ୍କର ଅବିଶ୍ୱାସ ଦେଖି ଜ୍ୟୋତିଷ ଡାକ୍ତର କହିଲେ--"ଥରେ ମିସେସ୍ ସେନ୍ ସହିତ ସାକ୍ଷାତ କରି ପାରିବି କି ?" ତାଙ୍କ ଅନୁରୋଧ ରକ୍ଷା ପାଇଁ ରଘୁନାଥ ଫୁଲକୁ ସମ୍ବାଦ ଦେଲେ । ଫୁଲ ପ୍ରଥମେ ବହୁତ ଇତସ୍ତତଃ କଲା, କିନ୍ତୁ ତାରକନାଥ କହିଲେ -"ସଯ୍ୟୋଗ ! ଭୟ କର ନାହିଁ, ସାକ୍ଷାତ୍ କର । ପ୍ରଭୁଙ୍କ ଦୟାରେ ତୁମର କୌଣସି ବିପଦ ହେବ ନାହିଁ ।

ଫୁଲ ଆଶ୍ୱସ୍ତା ହୋଇ କମ୍ପିତକଳେବରରେ ଆସି ଜ୍ୟୋତିଷ ସାକ୍ଷାତରେ ଛିଡ଼ା ହେଲା । ଜ୍ୟୋତିଷ ତାକୁ ବହୁକ୍ଷଣ ତାକୁ ଚାହିଁଲେ । ପରେ କହିଲେ—"ଫୁଲକୁମାରି ! ତୁମେ ଯାହାକୁ ସ୍ୱାମୀ ରୂପେ ପାଇଛ, ସେ ମହତ୍ ଦେବତା । ଆଶା କରେଁ, ତାହାର ସର୍ବଦା ବାଧ୍ୟ ରହିବ । ମାତ୍ର ଏ ପାଷଣ୍ଡ ଦିନେ ତୁମର ପ୍ରିୟ ଥିଲା । ସେହି ସ୍ମୃତିର ସମ୍ମାନସ୍ୱରୂପ ଏହି ସାମାନ୍ୟ ଉପହାର ମୋର ନେବ କି ?"

ଫୁଲ କି ଉତ୍ତର ଦେବ କିଛି ବୁଝି ପାରିଲା ନାହିଁ । ଜ୍ୟୋତିଷ ପୁଣି କହିଲେ—"ମୁଁ ଜାଣେ, ତୁମେ ମୋର ଟଙ୍କା ଛୁଇଁବ ନାହିଁ । ସେଥିପାଇଁ ମୁଁ ତାହା ସମ୍ପୂର୍ଣ୍ଣ ଭିନ୍ନ ଉଦ୍ଦେଶ୍ୟରେ ଦେବାକୁ ଆସିଛି । ତୁମର ମନେ ଥିବ ଫୁଲ ! ଯେଉଁ ଘରେ ବର୍ତ୍ତମାନ ତୁମର ଭାଇ ଅଛନ୍ତି, ସେହି ଘରେ ତୁମେ ଓ ମୁଁ ପ୍ରାୟ ଦୁଇବର୍ଷ କାଳ ଥିଲୁଁ । ମୋର ସେହି ପ୍ରିୟ ଆବାସଟି ଏ ଟଙ୍କା ସହିତ ମୁଁ ଦାନ କରୁଛି । ସେଠି ତୁମେ ତୁମର ଗୁଣବାନ୍ ସ୍ୱାମୀ ନାମରେ ଗୋଟିଏ

ଅନାଥାମାନଙ୍କ ପାଇଁ ଆଶ୍ରମ ନିର୍ମାଣ କର । କୁଳତ୍ୟାଗିନୀ, ନିଃସହାୟା ବିଧବା ନାରୀମାନେ ସେଠି ରହି ସବୁ ବିପଦରୁ ରକ୍ଷା ପାଆନ୍ତୁ । ଏହି ମୋର ଇଚ୍ଛା । ପୂର୍ବର ଦୋଷ ସବୁ ଭୁଲିଯାଅ, ଆଜିଠାରୁ ତୁମେ ଓ ମୁଁ ପରମ ବନ୍ଧୁ ।" ଜ୍ୟୋତିଷ ନୀରବ ହେଲା ।

ରଘୁନାଥ ଓ ତାରକ ବାବୁ ଦୁଇଜଣ ସ୍ତମ୍ଭିତନୟନରେ ଜ୍ୟୋତିଷର ମୂର୍ତ୍ତିକୁ ଚାହିଁ ରହିଲେ । କ୍ରମେ ସେ କୋଠରୀରେ ସନ୍ଧ୍ୟାର ଘନ ଅନ୍ଧକାର ମାଡ଼ି ଆସିଲା, କିନ୍ତୁ ସମସ୍ତେ ନୀରବ ନିଶ୍ଚଳ । ତାଙ୍କର ନିଶ୍ୱାସ ସୁଦ୍ଧା ଶୁଭୁ ନ ଥିଲା । କିଛିକ୍ଷଣ ପରେ ଯେତେବେଳେ ମାୟା ଆସି ବୋତାମ ଟିପି ଇଲେକ୍‌ଟ୍ରିକ୍ ବତିଗୁଡ଼ିକ ଜଳାଇ ଦେଲା, ସମସ୍ତେ ଦେଖିଲେ, ଜ୍ୟୋତିଷ ଆଉ ସେ ଘରେ ନାହିଁ ।

× × × ×

ଦିବାକରର ଅନ୍ତିମ ନିଶ୍ୱାସ ବହୁଥିଲା । ମୂର୍ଚ୍ଛିତା ସୀତାକୁ ରାତିଯାକ ଜଗି ବସିଛି ମାୟା, ତାହାର କୋଳରେ ଦିନେ ତାର କଳ୍ପନାରାଜ୍ୟର ସୀତା ମୁଣ୍ଡ ଦେଇ ନିଦ୍ରା ଯିବ, ଏହା ସେ ସ୍ୱପ୍ନରେ କଦାପି ଭାବି ନ ଥିଲା, କିନ୍ତୁ ଆଜି ସୀତାର ପ୍ରତ୍ୟେକ ହୃଦୟର ସ୍ପନ୍ଦନ ସେ ସ୍ପଷ୍ଟ ଶୁଣି ପାରିଲା । ଗୋଟିଏ କି ଅଦ୍‌ଭୁତ ଆବେଗରେ ତାହାର ଦେହ ଥର ଥର ହଉଥିଲା ।

ସୀତା ଶୋଇ ରହିଲା । ସେମାନେ କେତେବେଳେ ଯାଇ ଦିବାକରକୁ ଶ୍ମଶାନକୁ ନେଇଗଲେ, ସେ ଜାଣି ନାହିଁ, କିନ୍ତୁ ଘରେ କାନ୍ଦ ବୋବାଳି ଶୁଣି ସେ ବୁଝିଲା, ତାର ସ୍ୱାମୀ ଆଉ ନାହାନ୍ତି । ହେଲେ ସେ ଆଉ କାନ୍ଦିଲା ନାହିଁ । ପଥର ପାଲଟି ପଡ଼ି ରହିଲା । ମା କାଳୀ ତା ପ୍ରାର୍ଥନା ଶୁଣିଲେ ନାହିଁ । ଏହି କଥାଟି ମାତ୍ର ତା ଚିତ୍ତରେ ଫୋଡ଼ୁଥିଲା । ସେ ଦଗ୍‌ଧକଣ୍ଠରେ ଭୁଲିଁ ଥରେ ଲୋଟୁଥିଲା । ମାୟା ଓ ଫୁଲ ତାକୁ ଯେତେ ବୁଝାଇଲେ ସେ ବୁଝିଲା ନାହିଁ । ସେ ମରିବାକୁ ପଣ କରି ବସିଲା ।

କିଛିଦିନ ତଳେ ସେ ଏହିପରି ଥରେ ମରିବାକୁ ବସିଥିଲା । ସେ ଦିନ ଦିବାକର ଆସିଥିଲେ ତା ହାତ ଧରିବାକୁ, ରେଶମି ବାଣରେ ଦାଣ୍ଡ ଚମକାଇ, ବାଇଦରେ ସଡ଼କ ଉଚ୍ଛୁଳେଇ ଜମିଦାର ଦିବାକର ନବ ବରବେଶରେ ଆସିଥିଲେ, ତାହାର କ୍ଷୁଦ୍ର ହାତଟି ଧରିବାକୁ, ସେ ରାତରେ ସେ ବସିଥିଲା ମରିବାକୁ । ଅଶୋକବୃକ୍ଷ, ପୋଖରୀର କଇଁଫୁଲ, ଆକାଶରେ ଜହ୍ନ, ପିତେଇ ନାନୀ ଆଉ ରଘୁନାଥ ଥିଲେ ତାର ସାକ୍ଷୀ । ଆଜି ସେ ମରିବାକୁ ବସିଛି— ଦିବାକର ତାକୁ ପୃଥିବୀର ଏ ପାରିରେ ଏକାକିନୀ ବସାଇ ଚାଲିଗଲେ ବୋଲି;

ସେ କଣ କେବେ ଭାବିଥିଲା ସ୍ୱାମୀ ହବ ? ତାହାର କ୍ଷୁଦ୍ର ଜୀବନ–ନାଟକ ଏହି–ଠାରେ ଶେଷ ହେଲା ପରି ? ତେବେ କପାଁ ଆଉ ସେ ବଞ୍ଚିବ ? ବିଧବାର ଜୀବନଭାର ବହନ କରି କାହିଁକି ଆଉ ସେ ବଞ୍ଚିବ ? ବରଂ ସ୍ୱାମୀ ଯେଉଁ ଲୋକକୁ ଯାଇଛନ୍ତି, ସେ ସେହିଲୋକକୁ ଚାଲିଯିବ ।

ରଘୁନାଥ ଆସି କବାରେ ଛିଡା ହେଲା । ବହୁତ ବର୍ଷ ପରେ ଏକାକୀ ଆଜି ଦୁଇଜଣଙ୍କର ପୁନରାୟ ସାକ୍ଷାତ୍ । ରଘୁନାଥ କାନ୍ଦୁଛି । ସୀତାର ଦୁଃଖରେ କାନ୍ଦୁଛି । ବହୁବର୍ଷ ତଳେ ସେ ନିଃସହାୟ ଭାବରେ ଏହିପରି କାନ୍ଦିଥିଲା; ଏହିଠାରେ କନକ ପ୍ରତିମାଟିକୁ ଚିର ବିସର୍ଜନ ଦେଇଥିଲା; କିନ୍ତୁ ସେଦିନ ଆଉ ଏ ଦିନର ଢେର ପ୍ରଭେଦ । ଆଜି ତାର ସହାନୁଭୂତିର କାନ୍ଦଣା, ବନ୍ଧୁର ଶୋକ, ତଥାପି ରଘୁନାଥ କାନ୍ଦୁଛି । ସୀତା ମୁହଁ ତଳକୁ କରି ବସିଥିଲା, ରଘୁନାଥ ପିଲାଦିନ ପରି ତା କବାରେ ବସିଲା । ପିଲାଦିନ ପରି ଡାକିଲା, 'ସୀତା !' ସୀତା ସେ ମଧୁର ସମ୍ବୋଧନରେ ଈଷତ୍ ଚମକି ଉଠିଲା । ରଘୁନାଥ ଅଶ୍ରୁ ଗଦ୍‌ଗଦ୍ କଣ୍ଠରେ କହିଲା— "ସୀତା ! ଯାହା ହେବାର ହେଲାଣି, ମୋ ରାଣ, ଅମୂଲ୍ୟ ମୁହଁକୁ ଚାହିଁ ଆତ୍ମ-ହତ୍ୟାରୁ ବିରତ ହୁଅ ।" ସୀତା ସ୍ତମ୍ଭିତା ହୋଇ ସେ ଆଦେଶ ଶ୍ରବଣ କଲା । ସେ ଆଦେଶ ଲଂଘନ କରିବାକୁ ତାର ଶକ୍ତି ହେଲା ନାହିଁ । ସେ ମୁଣ୍ଡ ପୋତି ନୀରବରେ ବସି ରହିଲା । ଆଉ ତା କବାରେ ବସି ରହିଲା ରଘୁନାଥ । କେହି କାହାକୁ କିଛି କହି ପାରିଲେ ନାହିଁ; କିନ୍ତୁ ପରସ୍ପରର ମୁହଁକୁ ଚାହିଁ ସବୁ ପୁରୁଣା କଥା ସେମାନଙ୍କର ମନେ ପଡ଼ିଗଲା । ସ୍ମୃତି କି ଭୁଲିବାର ? କେହି ଯେ କାହାକୁ ଆଉ ଏ ଜୀବନରେ ଦେଖିବେ ବୋଲି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ; କିନ୍ତୁ ବିଧାତା ପୁଣି ସାକ୍ଷାତ୍ କରାଇଲା । ଏପରି ମୁହୂର୍ତ୍ତରେ ଉଭୟଙ୍କର ସାକ୍ଷାତ୍ ହେଲା ଯେ, ଜଣେ ସୌଭାଗ୍ୟର ଚରମ ସୀମାରେ, ଆଉ ଜଣେ ଦୁର୍ଭାଗ୍ୟର ନିମ୍ନତମ ସୋପାନରେ । ତଥାପି ଦିଓଟି ଆତ୍ମା ପରସ୍ପରକୁ ଚିହ୍ନିଲେ ପରି ?

ସୀତା ମରି ପାରିଲା ନାହିଁ । ଦିନେ ଯାହା କଥା ଲାଗି ମରି ପାରି ନ ଥିଲା, ଆଜି ତାହାର ଆଦେଶରେ ସେ ମରି ପାରିଲା ନାହିଁ ।



# ଦ୍ୱାତ୍ରିଂଶ ଅଧ୍ୟାୟ ।

ଚୌଧୁରୀଏ ଦାଣ୍ଡଘରେ ତକ୍ତପୋଷରେ ପଡ଼ିଛନ୍ତି । ମିଛରେ ଆଖି ବୁଜିଥିଲେ, ତାଙ୍କ ଆଖିକି ନିଦ ଆସି ନାହିଁ । ସେ ଭାବୁଛନ୍ତି ନାନା କଥା । ଏହି କେତୋଟା ବର୍ଷ ଭିତରେ ତାଙ୍କ ଉପରେ କ୍ରମାଗତ ଶୋକର ଢେଉ ବହି-ଗଲାଣି । ଦୁଇବର୍ଷ ତଳେ ବଡ଼ ଝିଅ ସାବିତ୍ରୀ ମରିଗଲା ଯେ, ତାର ମଲାବେଳେ ସୁଦ୍ଧା ଖବର ଟିକିଏ ପାଇଲେ ନାହିଁ । ଯାହାକି ତ ତା ଶାଶୁଘର ଯମପ୍ରକୃତିର, ସେଥିରେ ପୁଣି ତାକୁ ଅଣଦେଖା କରି ମାଇଲେ । ତା ଛ ମାସ ନ ଯାଉଣୁ ବଡ଼ ଗେଲବସର ନାତି ଲଚ୍ଛିଆଟି ଦିନକ ଜ୍ୱରରେ ତଣ୍ଟିରେ ଛୁରି ଦେଇଗଲା । ବୁଢ଼ା ସେଇଥିରେ ବସିଗଲେ । ଲଚ୍ଛିଆ ଥିଲା ତାଙ୍କର ଜୀବନଧନ । ତା ମୁହଁକୁ ଚାହିଁ ସେ ବାବୁର ସବୁ ଅତ୍ୟାଚାର ସହୁଥିଲେ । ଆଜିକାଲି ବାବୁ ସେ ଆଗ ବାବୁ ନୁହେ । ତାହାର ସ୍ୱଭାବ, ଚରିତ୍ର ନଷ୍ଟ ହୋଇ ଗଲାଣି । ରେବତୀର ବାର୍ଷିକ ଅନୁଷ୍ଠାନ, ତଜ୍ଜନିତ ରୋଗ ବ୍ୟାଧି ଇତ୍ୟାଦିରେ ଗୃହସୁଖରୁ ବଞ୍ଚିତ ହୋଇ ମିଙ୍ଗଳାବାଗରେ ଗୋଟିଏ ରୂପବତୀ ଯୁବତୀ ମୋଚିଆଣୀର ଆଶ୍ରୟ ନେଇଛି । ଚୌଧୁରୀଙ୍କର ବିଶ୍ୱାସ, ମୋଚିଆଣୀ ପୁଅକୁ ଔଷଧ କରିଛି । ସେଥିପାଇଁ ଅନେକ ଗୁଣିଆ ଆଣି ଝଡ଼ା ଫୁଙ୍କା, କାଟପାଣି, ତେଉଁରିଆ ଆଦି କରି ଥକିଲେଣି । ବାବୁର ମନ ପରିବର୍ତ୍ତନ ହେବାକୁ ନାହିଁ । ତା ଚିନ୍ତାରେ ଓ ଝିଅ, ନାତି, ବୋହୁଆଦି ଚିନ୍ତାରେ ଭାର୍ଯ୍ୟା ତ ଖଟଣା ଧରିଲେଣି । ତାଙ୍କ ହାଡ଼ରୁ ମାଉଁସ ମିଳେଇ ଗଲାଣି । ମଝିଆଁ ଝିଅ ସରଳା ତ ଏକାବେଳକେ ବାପଘରୁ ଚିର ଅନ୍ତର । ତା ଉପରେ ପୁଣି ସୀତାର ଏ ଖବର । ଚୌଧୁରୀଙ୍କର ଯନ୍ତ୍ରଣା ଏତେ ହୋଇ ନ ଥାନ୍ତା । ଘର-ହାଲ ତ ଏହିପରି, ପୁଣି ଗୋଟିଏ ନାବାଳଗୀ ସମ୍ପତ୍ତି ଲାଗି କଚେରିରେ ମୋକଦ୍ଦମା କରି କଲେକ୍ଟରୀ, ଜଜକୋର୍ଟରୁ ହାଇକୋର୍ଟ ପର୍ଯ୍ୟନ୍ତ ଗଲେଣି । ସେଥିରେ ବିସ୍ତର ଟଙ୍କା ଖରଚ ହେଲାଣି, ତା ଉପରେ ପୁଣି ମାଡ଼ ପିଟାପିଟି ମକଦ୍ଦମା ଲାଗି ଫୌଜଦାରୀ ବି ଚାଲିଲାଣି । ପୁଅ ତ ଅଯୋଗ୍ୟ । ସମ୍ପତ୍ତି ବାଡ଼ି ବୁଝା ସୁଝା କରି କେ ରଖନ୍ତା କଣ, ଓଲଟି ଘର ଟିକ ଯେବେ ପରକୁ ଦେଉଛି । ଗୁଡ଼ାଏ ବାପପୁଅରେ ଗାଳିଫଜିତି ହୁଏ, ଏହି ମାତ୍ର ଫଳ । ଚୌଧୁରୀଙ୍କର ବେଳେ ବେଳେ ମନେ ପଡ଼େ, ଜଗନ୍ନାଥ କବିରାଜ ମଧ୍ୟ ଥରେ ଥରେ ଚେତେଇ ଯାନ୍ତି, ସେହି ଅର୍ଜିତ । ପିଲାଟି କଥା, ସେହି ଲାଜକୁଳା, ଧୀର, ବୋଲକରା ରଘୁନାଥ କଥା; ତାକୁ ଘରଜୋଇଁ କରିଥିଲେ ଆଜି ଏ ଘରଟି ଥାଆନ୍ତା କେମିତି ? ତାହାର ବିଚକ୍ଷଣ ବୁଦ୍ଧି, ବିଷୟ-ଜ୍ଞାନ ବୁଢ଼ାର ବେଳେ ବେଳେ ମନେ ପଡ଼ି ମନ ଝୁରି ପାଣି ହୁଏ । ବିଶେଷତଃ ଭାର୍ଯ୍ୟାର ବାହୁନା କାନ୍ଦ, ପୁଣି ଦିବାକରଦତ୍ତ ଅପମାନ ବୋଝ ଉପରେ କଳଙ୍କ

ତଡ଼ାକି ହୋଇଥିଲା । ଏବେ ସେହି ଝିଅ ବିଧବା ହେଲା, ଏ କଥାର ଯେଉଁଦିନ ତାଙ୍କ ଆସି ପହଞ୍ଚିଲା, ବୁଢ଼ା ଦୁଆର ବନ୍ଧକୁ ଆଉଜି ପଡ଼ି ଘଡ଼ିଏ କାଳ ଥକା ମାରି ବସିଗଲେ । ମଧ୍ୟେ ମଧ୍ୟେ ବାତଜ୍ୱର ହୋଇ ତାଙ୍କର ବଳ ତ ଭାଙ୍ଗି ଯାଇଥିଲା । ଆଣ୍ଠୁ ଗଣ୍ଠି ମଧ୍ୟ ଧରି ଅନେକ କଷ୍ଟ ପାଇଥିଲେ । ସରସ୍ୱତୀ ଯେତେବେଳେ ମୁଣ୍ଡ ବାଡ଼େଇ କାନ୍ଦିଲେ, ତାଙ୍କର ଚେତା ବସିଲା । ସେ କାହାକୁ ବା କଣ ପ୍ରବୋଧ ଦେବେ ! ନିଜେ ନିତାନ୍ତ ଦୋଷୀ ପରି ଧୀରେ ଧୀରେ କଚେରିକୁ ବାହାରି ଗଲେ । ସେଠି ଭଙ୍ଗୁଆ ପରି ବହୁତ ବେଳଯାଏ ଆକାଶକୁ ଚାହିଁ ବସିଲେ । ଶେଷରେ ଚାରିଟାବେଳକୁ ଅଫିମ ଟେଳାକି ଗଳାଧଃକରଣ କରି ବିଛଣାରେ ଆସି ପଡ଼ିଗଲେ । ସେ ଦିନ ସେ ଏଡ଼େ ଗମ୍ଭୀର ଆଉ ଭୟଙ୍କର ଦିଶୁଥିଲେ ଯେ, କେହି ସାହସ କରି ତାଙ୍କ ସହିତ ପଦେ ପାଟି ଫିଟାଇଲା ନାହିଁ ।

ସେହି ଦିନୁଁ ବୁଢ଼ା ଆଉ ବେଶି କଥା କହନ୍ତି ନାହିଁ । କଣ କେତେବେଳେ ମନେ ମନେ ଭତ୍ ଭତ୍ ହୁଅନ୍ତି ବୁଝି ହୁଏ ନାହିଁ । ଅଫିମ ମାତ୍ରାକି ସେହିଦିନୁଁ ମଧ୍ୟ ବଢ଼ିଛି । ତାଙ୍କର ସରସ୍ୱତୀଙ୍କର କଥାବାର୍ତ୍ତା ଏକରକମ ନାହିଁ କହିଲେ ଚଳେ । ଯେଉଁ ଦିନୁଁ ସୀତାକୁ ସେ ବଳାଜୋରରେ ଦିବାକରକୁ ବିବାହ ଦେଇଛନ୍ତି, ସେହିଦିନୁଁ ସରସ୍ୱତୀଙ୍କର ତାଙ୍କ ଉପରୁ ଭକ୍ତି ତୁଟି ଯାଇଛି । କଥାରେ କହନ୍ତି, "କାଚ ଘଡ଼ି, ମନ ଘଡ଼ି, ଥରେ ଭାଙ୍ଗିଲେ ନ ହୁଏ ଯୋଡ଼ି ।" ସରସ୍ୱତୀଙ୍କ ମନ ତ ଭାଙ୍ଗି ଯାଇଛି । ତେବେ ଯେତେ ହେଲେ ହାତ ଧରିଲା ସ୍ୱାମୀ, ସେ ପୂର୍ବପରି ତାଙ୍କର ସବୁ ସେବା କରନ୍ତି । ମନଦୁଃଖ ମନରେ ମାରି ଘରର ହାଲ ହକିକତ ସବୁ ବୁଝନ୍ତି । ହେଲେ ଘର ଦୁଆରରେ ତାଙ୍କର ଆଉ ତେତେ ଖାତିର ନାହିଁ । ଗୁହାଳ ଭାଙ୍ଗି ଗଲାଣି, ଗାଇ ଗୋଟି ଗୋଟି ବିକ ହେଲେଣି । ନଉଆକୁ ପାଇକିରୁ ଛୁଟି ଦେବାରୁ ନଉଆ ଯାଇ ସୀତା ଘରେ କାମ କରୁଛି । ଚମ୍ପାବୋଉ ମରିଗଲାଣି । ବାକି ବୁଢ଼ୀ ହାଡ଼ୀ ପିତେଇ ନାମକି ରେବତୀକ ଧରି କଷ୍ଟେ ମଷ୍ଟେ ଘେଷାଇ ବାସ ପାଇଛି ସାଦରେ, ତାର ଆଖିକି ଭଲ ମଧ୍ୟ ଦିଶୁ ନାହିଁ । ପୁଣି ରଘୁନାଥ ଓ ସୀତା ଚିନ୍ତାରେ ସର୍ବଦା ଆଖିରୁ ଲୁହ ବୋହୁଛି । ରେବତୀର ଆଖି ମଧ୍ୟ ସବୁବେଳେ ଲୁହ ଜରଜର । ଯେଉଁ ସ୍ୱାମୀ ତାକୁ ମୁଣ୍ଡର ମଣି କରିଥିଲେ, ତାଠୁ ହତାଦର ପାଇ କେବଳ ଜୀବନ ଥିବାରୁ ବଞ୍ଚିଛି ସିନା ? ଆଜ ଅବଧି ସେ ବାରଟି ପିଲାର ମା । ସେଥିରୁ ଜୀବିତ ମୋଟେ ପାଞ୍ଚଟି । ଏଣିକି କେବଳ ପ୍ରତିବର୍ଷ ଅକାଳ ଜାତ ସନ୍ତାନଗୁଡ଼ିଏ ହୋଇ ହୋଇ ମରୁଛି ବଞ୍ଚୁଛି । ତାର ରୂପରଙ୍ଗ କିଛି ନାହିଁ । ମୁହଁ ପେଠା ପଡ଼ି ଗାଲପାଟି ହାଡ଼ ବାହାରି ପଡ଼ିଛି । ସୂତିକା ରୋଗରେ ସେ ଦୁଇବର୍ଷ ହେଲା ନିତି ନିତି ପଥ୍ୟ ପାଚନ ଖେଳ ବସିଛି । ଘର କଥା ଅବା ବୁଝିବ ସେ କଣ ? ସ୍ୱାମୀ ଚର୍ଚ୍ଚା ଅବା କରିବ ସେ କଣ ? ସେ ମଲ୍ଲିକାଠି ପରି ଆପଣାର ଅସ୍ଥିର ଜୀବନଟା ଯେନ ମ୍ରିୟମାଣ । ମ୍ଳାନବଦନରେ ଥରେ ବାରୁ

ସନ୍ଦେହ ଦେଖା ହୁଏ କି ନା ସନ୍ଦେହ । ବାବୁ ତନ ଘଡ଼ି ହିନ୍ଦୀ ଦେଇ ପଟେ-
କାନଧରି ହୋଇ ପଡ଼ି ରହୁଥାଏ । ତାହାର ଦାଣ୍ଡ ଭଲ [illegible] । ଲକ୍ଷ୍ମୀଆ
ମଲ୍ଲଦନ୍ତ ତା ମନ ଆହୁରି ମନ୍ଦ ନାଉଛି । ଘରେ ପୁଅ ଝିଅ ମଧ୍ୟରେ ଖେଳାବଣା ଓ
ମଙ୍ଗଳ ହଉଛି ସାନ ସାନ ଦିନ । ବାକି ଦୁଇ ନାତୁଣୀକୁ ବୁଢ଼ା ବହୁକାଳୁ
ବିଭା ଦେଇ ସାରିଲେଣି । ତାଙ୍କ ବିଭାବେଳେ ଅଉ ସେ ଧନ କଥା ଉଠାଇ
ନାହାନ୍ତି । ସୀତାଦେଇଙ୍କୁ ଦେଖା ପାଇ ତାଙ୍କ ମନ ମରୁଛି । ଘରଟିର ଆଉ ସେ
ଶ୍ରୀ ସମ୍ପଦ ନାହିଁ । ଜୀବନ ଥାଇ ନ ଥିଲା ପରି । ଏ ସବୁ କଣ ବୁଢ଼ାଙ୍କୁ ବାଧୁ
ନାହିଁ ? ବୁଢ଼ା ନୀରବରେ ସେହି ସବୁ ଚିନ୍ତା ଗୋଟି ଗୋଟି କରି ମନରେ
ଖେଳାଉଛନ୍ତି, ହଜାର ପଥର ହେଲେ ବି ଦିନେ ତରଳିବ । ହଜାର ବୁଢାର ମନ
କଠିନ ହେଲେ ମଧ୍ୟ ଦିନେ ତ ସେ ନଇଁଲା । ତାଙ୍କର ନିଜର ଦୋଷ ସେ
ବୁଝି ପାରୁଛନ୍ତି, ବୁଝି ଅନୁତାପ କରୁଛନ୍ତି; କିନ୍ତୁ ବ୍ୟର୍ଥ ଅନୁଶୋଚନାରେ ଆଉ
ଫଳ କଣ ? ସେ ବେଳେ ବେଳେ ଆଖି ମେଲାଇ ଘରର କଡ଼ିକାଠଗୁଡ଼ିକ
ଗଣୁଛନ୍ତି, ପାଖରେ ପଡ଼ିଥିବା ପଙ୍ଖା ହଲେଇ ଦେଉଛନ୍ତି । ଏହିପରି ସମୟରେ
ବାବୁ ସେ ଘରକୁ ଆସି ଦାଣ୍ଡ ସିନ୍ଦୁକ ଫିଟାଇ କଣ କାଢ଼ିବାକୁ ଲାଗିଲା ।
ଚଉଧୁରୀଏ ଟିକିଏ ମୁଣ୍ଡ ଉଠାଇ ତାଙ୍କୁ ବିରକ୍ତ ଭ୍ରୂଭଙ୍ଗୀରେ ଚାହିଁ ରୁକ୍ଷ
ସ୍ୱରରେ କହିଲେ—"ହରିହର ବାବୁ କଟକ କାଲି ସଞ୍ଜବେଳେ ଯିବାକୁ
କହିଥିଲେ, ଗଲୁ ?" ବାବୁ ସିନ୍ଦୁକର ତାଲା ଫିଟାଉ ଫିଟାଉ କହିଲା—"ମୋର
ବେଳ ନାହିଁ ଯିବାକୁ, ସେଠିଆ କି ହରୁଷିଆ କାହାକୁ ପଠାଉ ନା ?"

"ଆରେ ସେଥିରେ ତାଙ୍କର ଗରଜ, ନା ଆମର ଗରଜ ? ତୁ ମାଲିକ
ହୋଇ ନ ବୁଝିବୁ ତ, ଆଉ ମୁଁ ବୁଢ଼ାଟା କେତେ ଧନ୍ଦାଳି ହେବି ?"

ବାବୁ ବିରକ୍ତ ହୋଇ କହିଲା, "ତମକୁ କିଏ କହୁଚି ଧନ୍ଦାଳି ହବାକୁ ?
ଗୁଡ଼ିଏ ଦିନ, ଗଲା ଯାଉ । ଘଣ୍ଟ ଅର୍ଜିତ ସଙ୍ଗେ ଲଗି ମୋର ଯଶ ପାଉଚ ?"

ବୁଢ଼ା ଈଷତ୍ କୋପ ପ୍ରକାଶ କରି କହିଲେ—"କଣ କହିଲୁ—ତୋ
କଥାରେ ମୁଁ ଚଉଦ ମାଣ ବିଲ ଘରବାଡ଼ି ସବୁଠି ଗୁଡ଼ି ଦେବି ? ଆଉ ତୁ ସଙ୍ଗୀ
ସଙ୍ଗାତଙ୍କ ସାଙ୍ଗରେ ଆଖଡ଼ା । ମଉଛବରେ ମାତିଥିବୁ ? ତତେ ଯେଉଁ କଥା
କହିଲେ ବେଳ ନାହିଁ । ରଜାପୁଅଙ୍କ ସାଙ୍ଗରେ ବୁଲିବାକୁ ବେଳ ଅଛି ? କଣ୍ଢେଇ
ପୁଅ ସାଙ୍ଗରେ ଘଡ଼ି ଘଡ଼ି ପାଲା କରିବାକୁ ବେଳ ଅଛି ? ସର୍ବନାଶିଆ କୁଳାଙ୍ଗାର !"
କ୍ରୋଧରେ ଚଉଧୁରୀଏ ବିଛଣାରୁ ଉଠି ପଡ଼ିଲେ । ବାବୁକୁ ଟଙ୍କା ତମସୁକ ହାତ-
ବାକ୍ସଟା କାଢ଼ିବାର ଦେଖି ଗର୍ଜନ କରି କହିଲେ- "ତୁ କୁଞ୍ଚିକାଠି କୋଉଠୁ
ପାଇଲୁ ? ବୋଉ ଦେଇଚି ପରା ?—" ଏହା କହି ସରସ୍ୱତୀଙ୍କୁ ଦୁଇପଦ ଟାଣ
କଥା ଶୁଣାଇ ତା ହାତରୁ ବାକ୍ସଟା ଛଡ଼ାଇ ନେଇ କହିଲେ—"ତୁମ ମା
ପୁଅର ଟାଣ ମୁଁ ଭାଙ୍ଗିବି ଯେ । ତୁ ବୁଝିବୁ ନା, ସେ ଟଙ୍କା ମୋ ମଣ୍ଡିଆର ।"

ବାବୁ ପିତା ପ୍ରତି କ୍ରୋଧକଟାକ୍ଷ ନିକ୍ଷେପ କରି କହିଲା—"ଆଜି, ଇଲଗେ ମୋର ପାଞ୍ଚଶ ଟଙ୍କା ଦରକାର । ତୋଉ କତରେ ଥିଲେ ତମ ସିନ୍ଧୁକରେ ହାତ ଦେଇ ନ ଥାନ୍ତି ।"

"ପାଞ୍ଚଶ ଟଙ୍କା କଣ କରିବୁ ? କେଉଁଠି ଖାନା ଖେଳ ହଉଚ ପଧ ?"

"ସେଥିରେ ତମର କଣ ଅଛି ? ମତେ ପାଞ୍ଚଶ ଟଙ୍କା ଇଲଗେ ଦିଅ, ମୁଁ ଆଉ ବିଳମ୍ବ କରି ପାରିବି ନାହିଁ । ଦାମ ବାବୁ ବାହାରେ ଚହିଛନ୍ତି ।"

ବୁଢା ଆଉ ସମ୍ଭାଳି ପାରିଲେ ନାହିଁ । ପୁଣି ବିଛଣାକୁ ଉଠି ବସି କହିଲେ, "କଣ ? ତୁ ପାଞ୍ଚଶ ଟଙ୍କା ନେଇଯିବୁ ? ଦାମ ବାବୁ ପର ବଜାର ଚୁଲିଖୋର—" ସେ ଆଉ କଣ କହିଥାନ୍ତେ, ବାବୁ ପ୍ରଚଣ୍ଡ ରାଗ ହୋଇ କହିଲା—"ତୁନିପଡ଼ ତୁମେ ! ମତେ ପାଞ୍ଚଶଟଙ୍କା ଦେବ କି ନାହିଁ କହ ? ଭଲେ ଭଲେ ଦେବ ତ ଦିଅ, ନହିଲେ ସେହି ସୁନାହାରଟା ନଉଚ ?" ଏହା କହି ଚାବିଟା ଝିଙ୍କି ନେଲେଇ ଦେଲା ।

ବୁଢା ବସି ବସି କହିଲା "ହବୁ ନେ । ତୋର ପାଇଁ ସଞ୍ଚୟ କରି ଲକ୍ଷ୍ମୀ ରକ୍ଷିତ ରେ କୁଳ ବାଳୁଙ୍ଗା ! ତୋର ବାପ ପିତାଙ୍କ ପାଇଁ ! ମୋ ଧନ ଆଉ ନାହିଁ ଯେ, ଯାଉଚ ! ହଉ ଦେଖିବୁ ତୁ ! ହାତ ପଠିରେ ଲୁହ ପୋଛୁବୁ !"

ଏହା ପରେ ବାପ ପୁଅଙ୍କର ଖୁବ୍ ତୋଳାବୋଳି ଥୋଡାଏ ହେଲା; କିନ୍ତୁ ବାବୁ ନ ମାନି ପାଞ୍ଚଶ ଟଙ୍କା ନେଇ ଆସିଲା । ଭିତର ଦ୍ୱାରରେ ରେବତୀ ଠିଆ ହୋଇ କାନ ପାରି ବାପ ପୁଅଙ୍କ କଜିଆ ଶୁଣୁଥିଲା । ସ୍ୱାମୀ ଉପରେ ଶ୍ୱଶୁରର ଅନର୍ଗଳ ଅଭିଶାପରେ ତ ମନଭିତର କାନ୍ଦି ହୋଇ ଯାଉଥିଲା । ସେ ଦୀର୍ଘ-ନିଶ୍ୱାସଟିଏ ପକାଇ ଯେମିତ ମୁହଁ ବୁଲାଇଛି, ବାବୁ ସେ ଘରୁ ବାହାରି ଆସିଲା—ତାହାର ରାଗ ଓ ଉତ୍ତେଜନାରେ ଗୋରାମୁହଁ ନାଲି ପଡି ଯାଇଥିଲା । ରେବତୀ ଖାଲି ଏତକ କହିଲା—"ବାପାଙ୍କୁ ଏତେ ଭଣ୍ଡଷଣ୍ଡ ଗାଳି କାହିଁ ସର୍ବଦା ଦେଉଚ କହିଲ ? ସେ ସପୁଚନ୍ତି, କାନ୍ଦୁଚନ୍ତି—"

"ତୋର କଣ ଅଛି ବଜାତ—ତୁ ସେ ଖଣ୍ଡ ବୁଢ଼ାର ପକ୍ଷ ନେଇ ମୋ ସାଥିରେ ଲଢ଼ିବାକୁ ଆଇଲୁ—?"

ରେବତୀ ତୁନି ହୋଇ ରାଗରେ ଜରିଗଲା । ସେ ଆନନ୍ଦରେ ମୁଠି ବନ୍ଦେଇ ବନ୍ଦେଇ ବାଣ୍ଡକୁ ଗଲା । ଦାମ ବାବୁ ଚନ୍ଦ୍ରକାନ୍ତଙ୍କୁ ଅପେକ୍ଷା କରି ବସିଥିଲେ । ତାହାର ଏତେ ବିଳମ୍ବ ଦେଖି କହିଲେ —"ଏତେ ଉଚ୍ଛୁର କାହିଁ ?"

"ଟଙ୍କା କଣ ସହଜରେ ମିଳେ ? ପୁଣି ଗର୍ଜ୍ଜନ ତର୍ଜ୍ଜନ ପାଇଁ । ସେ ଓଲ୍ଡ ଫୁଲ୍ ଆମୋଦପ୍ରମୋଦର କଣ ପାଖ ଦେବ ମାଜନ ?"

"ତୋ ବାପ ଏକା ପୁରୁଣା କାର୍ପଣ । ଲୋକଟା ଏତେ ଧନ ସାଇତି ଧରିଇଛି ଯାହା ହସି ଖୁସିରେ ଖର୍ଚ୍ଚ କରିବାକୁ ଦେଉ ନାହିଁ ।"

"ତାର ଦ'ଓଳି ଦ' ଟେଳା ଅଫିମ ହେଲେ କଥା ସରିଲା । ଅଫିମ ନିଶା ମୁଣ୍ଡରେ ଯେତେ ଚଢୁଥିବ, ବୁଢାର ହିସାବପତ୍ରଟା ସେତିକି ଗୋଳେଇ ମିଶେଇ ଯାଉଥିବ । ମତେ କହୁଚ, ହରିହର ବାବୁ କଟକ ଯା । ଅରେ ତମେ ତ ଜାଣି ଜାଣି ଗଣ୍ଡ ମାଇକିନାକୁ ଭୁଲେଇ ନାବାଳଗ ସମ୍ପତ୍ତି ନେଇଚ, ମୁଁ ସେ ପାପରେ କାହିଁକି ପଶିବି ? ଏତେ ପାପ କଣ ଧର୍ମ ସହିବ ? ବିଧାତା ସେଇ ଯୋଗୁ ମୋ ସୁନାପୁଅକୁ ଛଡ଼େଇ ନେଇଛନ୍ତି ।"

"ଲକ୍ଷିଆ ଗଲାଦିନୁଁ ତୋ ବାପ ବସିଗଲେ—"

"ତେବେ ତ ସେଟା ମରୁ ନାହିଁ !"

ରାମ ବାବୁ ହସିଦେଇ ତାଆରିଲା ପରି କହିଲେ—"ହଇ ରେ ! ବାପକୁ ଏମିତି କଥା କହନ୍ତି ?"

ବାବୁ କହିଲେ—"ଆଉ, ନାଇଁ ତ ବସି କରି ଖାଲି ସରିଙ୍କର ଅନିଷ୍ଟ କରୁଥିବ । ତାହାଯୋଗୁ ତ ସୁନାଘର ଚୂନା ହେଲା । ତା ସଙ୍ଗେ କାର ଟେଢ଼େ କହିଲ ?"

"ତୋ ଶଶୁର ସାଙ୍ଗରେ ଖୁବ୍ କଜିଆ କରୁଚ ବୁଢ଼ା, ନାଁ ?"

"ତା ଝିଅଟାକୁ ଏଠି ବନ୍ଧ କରି ରଖିବା ଫଳ କଣ କହିଲ ? ମୁଁ ତ କହେ ଏଇ ମୁହୂର୍ତ୍ତରେ ଯାଉ । ଦିନସାରା ତା ପଥିପାଚନ ଦେଖି ଦେଖି ମତେ ବିରକ୍ତ ଲାଗିଲାଣି । ସବୁବେଳେ ଦିହ ଦୁଃଖକୁ କିଏ ପାରିବ ବାବା !"

"ତାର ଦୋଷ କଣ କହିଲୁ ? ତାର ତ ବର୍ଷକୁ ବର୍ଷ ପିଲା ହଉଚି ?"

"ମୁଁ କଣ ତାକୁ କହୁଚି ବର୍ଷକୁ ବର୍ଷ ପିଲା ଜନ୍ମ କରି ଆଉ ଗାଡ଼ିକୁ ଦଉଥା !"

"ସେ କଣ ବିଧାତା ପୁରୁଷ !"

"କାହିଁରେ ଖୁଡି ! ଦୁନିଆଟା ସ୍ଫୂର୍ତ୍ତିମୟ, ମୁଁ କିଆଁ ଏତେ ଦୁଃଖ ଯନ୍ତ୍ରଣା ଭୋଗିବି ?"

"ହଁ ତୋର ତ ବନ୍ଧନା ବଡ଼ ଅଛନ୍ତି !"

ବାବୁ ହସି ଦେଇ କହିଲେ—"ରୁନ ହ, ରୁନ ହ । ଆମେ ବ୍ରାହ୍ମଣ, ଏମିତି କଥା କହୁଚୁ ?"

‘‘ହଁ’’, ଏହା କହି ଦାମ ବାବୁ ଓରଫେ ଦାମୋଦର ପଟ୍ଟନାୟକଙ୍କ ଓ ବାବୁ ଓରଫେ ବିଷ୍ଣୁପ୍ରସାଦ ଦୁଇ ଜଣ ଯାଇ ମଙ୍ଗଳାବାଗ ଗୁଲି ଆଡ୍ଡାରେ ଉଠିଲେ । ଦାମ ବାବୁ ପୁରୁଣା ଗୁଲିଖୋର, ବାବୁ ଶିକ୍ଷାନବିଶ୍ ମାତ୍ର ।

ଜ୍ୱାଇଁର ଏ ଅଧଃପତନ ଦେଖିଲା ଦିନୁଁ ଜଗନ୍ନାଥ କବିରାଜ ମର୍ମେ ମର୍ମେ ମରି ଗଲେଣି । ନିଜ ବୁଦ୍ଧିରେ ଜମିଦାରପୁଅକୁ ଝିଅ ଦେଇଛନ୍ତି ଷିବ ମନସ୍ତାପରେ ଦୁଇ ପ୍ରାଣୀ ଦିନ କାଟୁଛନ୍ତି । ସେଦିନ ସକାଳୁ ସକାଳୁ ଦିଟା ସାନ୍ଧବାତି ତାରାମଣି ପୋଥି ଧରି ବସିଲେ । ଆଜି ତାଙ୍କ ମନ ଆଗ୍ରହ ଓ ଆନନ୍ଦରେ ପୂରି ଉଠିଚି । ଜଗନ୍ନାଥ ନାହାନ୍ତି, ଷ୍ଟେସନକୁ ଯାଇଛନ୍ତି—ରଘୁନାଥ ଆଉ ତା ପିଲାପିଲିଙ୍କି ପାଛୋଟି ଆଣିବାକୁ । ତାରାମଣି ବାରମ୍ବାର ଦାଣ୍ଡ ସଡ଼କକୁ ଚାହୁଁଛନ୍ତି । ଆଜିକାଲି ତାଙ୍କ ଘର ନିତାନ୍ତ ଶୂନ୍ୟ, କେବଳ କଡରେ ଅଛି ରୁପେଇ ବୋଲି ରୁକଣୀ ପିଲାଟି ।

ରୁପେଇର କେହି ନାହିଁ । ଜାତିରେ ସେ ବାଉରୁଣୀ । ଯେତେବେଳେ ତାକୁ ଦୁଇ ବର୍ଷ, ତା ମା ବାତଶ୍ଳେଷ୍ମା ଜ୍ୱରରେ ମରିଗଲା । କବିରାଜେ ତା ପାଇଁ ବହୁତ ଔଷଧ ପାଣି କରିଥିଲେ, ସେହିଦିନୁ ରୁପେଇଟି ତାଙ୍କ ବାଡ଼ି ପଦାରେ ପଡ଼ିଛି । ବାହାର ଘର ଖଟେକେ, ଗୁହାଳଟା ପୋଛୁ ଦିଏ, ହେଲେ ନିହାତି ନିଶ୍ଚୁଛିଆ ବେଳେ ତାରାମଣିଙ୍କ ସଙ୍ଗରେ କଥାଭାଷା ହୁଏ । ଏବେ ଆସି ତାକୁ ବୟସ ହେଲାଣି ଦଶ, ଏଗାର । କାଳୀ ହେଲେ ମଧ ଗଣ୍ଡି ମୁଠିଆ । ପେଜ ପାଣି ପିଇ ତା ଦେହ ବଳିଲା ପରି । ତା ହାତର ଦୁଇମୁଠା ମୋଡ଼ା ଖାଇଲେ ଜଗନ୍ନାଥଙ୍କର ବୁଲି ବୁଲି ଥକି ଯାଇଥିବା ଗୋଡ଼ ଦୁଇଟାରୁ ବିଷ ଛାଡ଼ିଯାଏ । ତା ମାୟା, ସ୍ନେହ, ସେବା, ଯତ୍ନରେ ମୋହିତ ହୋଇ କବିରାଜେ ତାକୁ ମା ବୋଲି ଡ଼ାକନ୍ତି । ତା ପାଇଁ ହାତକୁ ଦୁଇ ମୁଠା ରୂପା କାଚ, କାନକୁ ହଳେ ସୁନାଫୁଲ, ବେକରେ ରୂପାର ଗୋଟିଏ ଜଞ୍ଜିର କରି ଦେଇଛନ୍ତି । ରୂପେଇ ସାଆନ୍ତ ସାଆନ୍ତାଣୀଙ୍କୁ ଅଜା ଆଈ ବୋଲି ଡାକେ ।

ଆଜି ତା ମନଟା ଖୁବ ପ୍ରଫୁଲ୍ଲ । ଆଈ କହିଛନ୍ତି ତାଙ୍କ ପୁଅବୋହୂ ଆସିବେ, ନାତି ନାତୁଣୀ ଆସିବେ । ତା ମାମୁ ମାଇଁଙ୍କ ବାଟ ଚାହୁଁ ସେ ଓଳିଏ ହେଲା ଛୁଡ଼ା ହୋଇଛି । ତାରାମଣି ତାକୁ କହିଲେ—‘‘ଯା, କାନଟା ପାରି ଟିକଏ ଗଡ଼ପଡ଼ ହ । କଅଁ ଏତେ ଠିଆଟା ହେଇ ଦଣ୍ଡ ସାଧୁଚୁ ? ତାଙ୍କ ଆସିବା ବେଳ କଣ ହେଲାଣି ?’’

ରୁପେଇ ବୁଲେଇ କହିଲା—‘‘ଆଇ ! କେଏ କେଏ ଆସିବେ ?’’

ତାରାମଣି ପୋଥି ଥୋଇ ଦେଇ କହିଲେ—‘‘ତୋ ମାମୁଁ ଆସିବ, ମାଇଁ ଆସିବ, ତାଙ୍କ ପୁଅ ଝିଅ ଆସିବେ ।’’

"ତାଙ୍କ ପୁଅ ଝିଅ ନାଁ କଣ ?"

ଏତିକିବେଳକୁ ଦାଣ୍ଡରେ ଗାଡ଼ି ଶବ୍ଦ ଶୁଭିଲା । ରୂପେଇ ନିଜ ପ୍ରଶ୍ନର ଉତ୍ତର ଅପେକ୍ଷା ନ କରି ଏକାବେଳକେ ଦାଣ୍ଡପିଣ୍ଡାରେ ଯାଇ ଉଠିଲା । ତା ଦୁର୍ଭାଗ୍ୟକୁ ଶଗଡ଼ଟିଏ ସେ ବାଟେ ଦେଇ ଗଲା । ସେ ତାକୁ ମନ ଇଚ୍ଛା ଦୁଇ ପଦ କହି କାନଧରି ଶୋଇ ପଡ଼ିଲା । ଗାଢ଼ନିଦରେ ତା ମାମୁଁ ମାଇଁ ଆସିବା କଥା ପାସୋରି ପକାଇଲା ।

ରଘୁନାଥ ଓ ମାୟା ଆସି ଜଗନ୍ନାଥ ଓ ତାରାମଣିଙ୍କ ଚରଣରେ ପ୍ରଣାମ କଲେ । ପିଲାଙ୍କର ବାରମ୍ବାର ମୁଖଚୁମ୍ବନ କରି ସ୍ନେହମୟୀ ଆଈ ଆଖିରୁ ଆନନ୍ଦ-ଧାରା ବହିବାକୁ ଲାଗିଲା । ଆଜି ବହୁଦିନ ପରେ ପିତା ପୁତ୍ରର ମିଳନ । ବହୁବର୍ଷ ତଳେ ସେହି ଯେ ସକାଳ ବେଳେ ଗାଁକୁ ଯିବାକୁ ରଘୁନାଥ ବିଦାୟ ନେଇଥିଲା, ସେହି ଦିନୁଁ ପ୍ରାୟ ପନ୍ଦର ବର୍ଷ ପରେ ଏ ସାକ୍ଷାତ୍ । ସମସ୍ତଙ୍କର ଏଥି ମଧ୍ୟରେ ଅନେକ ପରିବର୍ତ୍ତନ ହୋଇ ଯାଇଛି । ଜଗନ୍ନାଥ ତାରାମଣିଙ୍କର କଳାବାଳ ଠାଏ ଠାଏ ପାଚି ଧଳା ଦିଶିଲାଣି । ତାରାମଣି ଆଗଠାରୁ ଝଡ଼ି ଯାଇଛନ୍ତି । ତାଙ୍କ ସ୍ୱାମୀ ଝାଳା ପଡ଼ି ଯାଇଛନ୍ତି । ରଘୁନାଥ ପରମାନନ୍ଦରେ ଖଟରେ ବସି ପଡ଼ିଲା । ତାରାମଣି ମହାଶ୍ରଦ୍ଧାରେ ଉଠି ସମସ୍ତଙ୍କର ତର୍ଚ୍ଚାରେ ଲାଗିଗଲେ । ମାୟାକୁ ଭୋଜନରେ ବସାଇ ତାରାମଣି ସ୍ନେହରେ କହିଲେ—"ଗରିବ ଘର ସାତ ମାଙ୍କୁ ରୁଚିବ କି ?"

ମାୟା ଲଜ୍ଜାନତ ଦୃଷ୍ଟି ତଳକୁ କରି ରହିଲା । ତା ଶାଶୂ ଶ୍ୱଶୁର ପାଇ ସେ ଯେ କେତେ ପରମାହ୍ଲାଦିତା, ଏହା ବଚନରେ ପ୍ରକାଶ କରିବା ତାହାର ସାଧ ନ ଥିଲା । ତାରାମଣି ତା ଆଖିରୁ ତା ମନ କଥା ବୁଝି ପାରିଲେ । ତୋତାକୁ ନେବାକୁ ହାତ ବଢ଼ାଇଲେ । ତୋତା ନୂଆ ଲୋକ କୋଳକୁ ଯିବାକୁ ଆଦୌ ମଙ୍ଗିଲା ନାହିଁ । ନିର୍ମଳ, ନିରୁପମ ଦୁହେଁଯାକ ଆଈର ଦପଟେ ବସିଗଲେ । ମିନତି ଅଜା କୋଳରେ ଆଉଜି ପଡ଼ିଲା ।

ବାପ ପୁଅର କଥା ଆଉ ସରୁ ନାହିଁ । ସେ ରାତିରେ ଆଉ କାହାରିକୁ ଆନନ୍ଦରେ ନିଦ ହେଲା ନାହିଁ । ରୂପେଇ ମଧ୍ୟ ଅଧରାତିଯାକେ ବସି ନୂଆ ମାମୁଁ, ମାଇଁଙ୍କି ରଙ୍ଗ ସରସର ହୋଇ ଶୁଙ୍ଘି ବସିଲା ।

ବାବୁର ହାଲ ଶୁଣି ରଘୁନାଥ ଆଖିରୁ ପାଣି ଗଡ଼ିଗଲା । ସେ ଗଭୀର ଶ୍ୱାସ ସହ ପିତାଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲା ।

ନିଭୃତରେ ମାୟା ଓ ରଘୁନାଥ । ଜଗନ୍ନାଥ ବାହାରକୁ ଯାଇଛନ୍ତି । ତାରାମଣି ମନ୍ଦିରରେ ନାତି ନାତୁଣୀଙ୍କୁ ଧରି ବସିଛନ୍ତି, ସଞ୍ଜ ଗଡ଼ିଗଲାଣି । ବାରପଟରୁ

ହେନାଫୁଲର ଗନ୍ଧରେ ପ୍ରାଣ ମାତି ଉଠୁଛି । ବାରପିଣ୍ଡାରେ ବସି ରଘୁନାଥ ମାଳୁକୁ କହିଲେ—"ଏଠି ତୁମର ଚଳିବାକୁ ଅସୁବିଧା ହେଉ ନାହିଁ ତ ? ମୁଁ ଅନ୍ୟ ଘର ଦେଖିବି ?"

ମାଳୁ ଚମକି ପଡ଼ି କହିଲା—"ଏ ପରା ବାପ ମାଙ୍କୁ ଛାଡ଼ି ମୁଁ ଯିବି ଅନ୍ୟ ଘରକୁ ? କେଇଟା ଦିନ ଲାଗି ଆସିଚୁଁ ଯେ ! ମା'ଙ୍କ ପ୍ରେମରେ ଭୋଳିଏ ବାଇ । ଚାଲ ନା, ଏଥର ମା ବାପାଙ୍କୁ ବର୍ମା ନେଇଯିବା ?"

ରଘୁନାଥ ଦୁଃଖିତ ହୋଇ କହିଲା—"ମାଳୁ ! ତୁମେ ଯଦି ଜାଣନ୍ତ ବାପାଙ୍କର ଏ ସ୍ୱାର୍ଥ ଟଣ ଯୋଗୁଁ ତାଙ୍କୁ କେତେ ଦଣ୍ଡ ମିଳିବ ?"

ମାଳୁ ହସି ଦେଇ କହିଲା—"ଆଉ ମିଳିବାକୁ ବାକି ନାହିଁ ଯେ । ଲୁଚେଇ କି ରଖିଲାହନ୍ତି ସେମାନେ ପରା ଏକଘରିକିଆ ?'

"କଣ କହୁଚ ?" ବିସ୍ମିତ ରଘୁନାଥ କିଛୁକ୍ଷଣ ତୁନି ହୋଇ ସେଠି ବସି ରହିଲା । ମାଳୁ ଯେ କେତେବେଳେ ଘର ଭିତରକୁ ଚାଲି ଯାଇଥିଲା, ସେ ଜାଣି ନାହିଁ ।

ନୀରବ ନୈଶାକାଶକୁ ଚାହିଁ ତାହାର ବାଲ୍ୟକାଳର ଶତ ଶତ ସ୍ମୃତି ଏକାବେଳକେ ତାର ଚିତ୍ତ ଅଧିକାର କରି ବସିଲେ । ଏହି ସେହି ବାରପିଣ୍ଡା । ଏଇଠି ବସି ସେ କେତେ ତା ପ୍ରାଣର ସୀତା କଥା ଭାବିଥିଲା, କେତେ ସୁଖର ମଧୁଚକ୍ର ରଚନା କରିଥିଲା, ଏହି ଘରେ ସୀତାକୁ ନେଇ ସେ ସୁଖର ସଂସାର କରିବ ବୋଲି କେତେ ପାଞ୍ଚ ପାଞ୍ଚୁଥିଲା । ଆଜି କାହିଁ ସେ ସୀତା ! ତଥାପି ସୀତା ତା ହୃଦୟରେ ଅଛି । ସୀତାକୁ ଦେଖିଲା ଦିନୁ ଏକଥା ନିତି ନିତି ତା ମନେ ପଡ଼ୁଛି । ତାକୁ ସେ ଭୁଲି ନାହିଁ । ତା ପ୍ରେମ ଭସ୍ମାଚ୍ଛାଦିତ ବହ୍ନି ପରି ତାହାର ହୃଦୟର ଗୋପନତମ ପ୍ରଦେଶରେ ଅଦ୍ୟାପି ଲୁକ୍‌କାୟିତ । ଯେ ଆବାଲ୍ୟ ସଙ୍ଗିନୀ ଥିଲା— ଯାହାର ପ୍ରତ୍ୟେକ କଥା, ପ୍ରତ୍ୟେକ କାର୍ଯ୍ୟ ତାର ପ୍ରେମରେ ଅଭିଷିକ୍ତ ହୋଇଥିଲା, ତାହାର ପ୍ରତ୍ୟେକ ରକ୍ତବିନ୍ଦୁ ଯାହାର ନାମରେ ବହୁଥିଲା, ସେହି ସୀତା—ସେ ବାଲ୍ୟସଖୀ ସୀତାକୁ ରଘୁନାଥ କେମିତି ଭୁଲନ୍ତା ? ତାହାର ପ୍ରତିଜ୍ଞା ଭାଙ୍ଗିଛି, ସେ ସଂସାର କରିଛି, ପ୍ରେମମୟୀ ସତୀ ସାଧ୍ୱୀ ପତ୍ନୀ ଲାଭ କରିଛି, ଦୁଇ ପିଲାର ବାପ ହୋଇଛି, ତଥାପି ସୀତାକୁ ସେ ଭୁଲି ନାହିଁ । ସୀତାର ପ୍ରତ୍ୟେକ କଥାଟି ତା ମର୍ମରେ ଲେଖା ହୋଇ ରହିଛି—ତାହାର ଜୀବନର ଯେ ସୀତା ଥିଲା ଲକ୍ଷ୍ୟ । ଉପଲକ୍ଷ ଗୁଡ଼ାଏ ଯୁଟିଛନ୍ତି ସତ୍ୟ, ତଥାପି ସୀତା ତାହାର ହୃଦୟରେ ଜୀବିତ ଅଛି । ମୃତ ଆତ୍ମୀୟର ସ୍ମୃତି ପରି ସେ ସୀତାର ବାଲ୍ୟ-ସ୍ମୃତିକୁ ଗୁପ୍ତଧନ ରୂପେ ପ୍ରାଣର ସଙ୍ଗୋପନ କରି ରଖିଛି । ସୀତା ତାର ହଜି ନାହିଁ—ଅନ୍ତରରେ ଅଛି; ମରି ନାହିଁ ମର୍ମରେ ଜୀବିତ ରହିଛି । ଏହି ଘର ହିଁ ତାର ସାକ୍ଷୀ, ଏହି

ତାଙ୍କର ପ୍ରତ୍ୟେକ ଗଛ ତାର ପ୍ରମାଣ, ସେଇ ପୁରୁଣା ଆମ୍ବଗଛଟା ଅଦ୍ୟାପି ଜୀବିତ ଅଛି, ତାହାରି ମୂଳରେ ବସି ରଘୁନାଥ ଚିନ୍ତା କରୁଥିଲା ସୀତାର କଥା; ସୀତାର ବୈଧବ୍ୟ–ବୃନ୍ଦାବନକୁ ତବାହ ହେବା ଆଶଙ୍କାରେ ତାହାର କୋମଳ ପ୍ରାଣ କାନ୍ଦି ଉଠିଥିଲା । ଆଜି ଅଭାଗିନୀ କଣ ହୋଇଛି ? ସେ ବିଧବା ହେବା ତା କପାଳରେ ଶେଷକୁ ଘଟିଲା ! କିନ୍ତୁ ବକୁଳପର ମନେ ପଡ଼ିଲା ସୀତାର ସେହି ସ୍ୱର୍ଣ୍ଣମାଳା ଦାନ । ସେହି ଦିନ ତ ସେ ତାକୁ ସ୍ତ୍ରୀ ବୋଲି ଭାବିଥିଲା । ସଂସାର ରଙ୍ଗମଞ୍ଚରେ ନାଟୁଆଙ୍କ ଭଳି ଆଉ ଯେତେ ସୁଅଙ୍ଗ କଲେ ସୁଦ୍ଧା ସେ ତ ତାର ପ୍ରଥମ ବିବାହ । ଅନ୍ତରାତ୍ମାକୁ ସାକ୍ଷୀ କରି ସେ ଯେ ବିଭା ହୋଇଥିଲା । କି ଅପୂର୍ବ ସ୍ୱାର୍ଥ ତ୍ୟାଗ କରି ସେ କନକପୁତ୍ତଳି ବିସର୍ଜନ ନ ଦେଇଛି । ଭାବୁ ଭାବୁ ରଘୁନାଥର ଗ୍ରୀବ କୋହରେ ବୁଡ଼ିଗଲା । ଆକାଶର ତାରା ଚନ୍ଦ୍ର ରଘୁ ମୁହଁକୁ ଅନାଇଲେ । ପନ୍ଦର ବର୍ଷ ତଳେ ଠିକ ଏଇଠି ରଘୁକୁ ସେମାନେ ଦେଖିଥିଲେ । ସେତେବେଳେ ତାହାର ସୀତା ମାତ୍ର ସମ୍ବଳ ଥିଲା । ଆଜି ତାହାର ଘରଆଡ଼େ ପ୍ରେମର ଫୁଲବନ । ତଥାପି ସୀତା ଫୁଲର ପ୍ରଜାପତି, ସେ—ତାକୁ ଭୁଲି ନାହିଁ । ସୀତା ପରର ସ୍ତ୍ରୀ, ବର୍ତ୍ତମାନ ବିଧବା, ସନ୍ତାନବତୀ ଜନନୀ, ତଥାପି ରଘୁନାଥ ତାକୁ ମନେ ପକାଇ ବ୍ୟଥିତ ହେଉଛି । ଦେହ ସହିତ ତାର ସମ୍ବନ୍ଧ ତୁଟିଛି, କିନ୍ତୁ ଅନ୍ତରାତ୍ମାର ସେହି ପୁରାତନ–ପୁରାତନ ସମ୍ବନ୍ଧ ରହିଛି । କିଏ ଜାଣେ ସେ କେଉଁ ଯୁଗର ସମ୍ବନ୍ଧ ? କିଏ ଜାଣେ ସେ କେଉଁ ଜନ୍ମର ସମ୍ପର୍କ ? କିଏ ଜାଣେ ସେ କେଉଁ ଲୋକ ଲୋକାନ୍ତରର ଅଚ୍ଛେଦ୍ୟ ଶୃଙ୍ଖଳ ? ରଘୁନାଥ ଦୀର୍ଘଶ୍ୱାସ ସହି ମାନବର ଜଟିଳ ବିଷୟ ଭାବୁଥିଲା । ଏତେ ପରିବର୍ତ୍ତନ ଭିତର ଦେଇ ସେ ଆସିଲାଣି, ଏତେ ସୁଖ ଦୁଃଖର ଢେଉ ତା ମୁଣ୍ଡ ଉପର ଦେଇ ଗଲାଣି, ତଥାପି ସେହି ଯେ ଛ ବର୍ଷର ବାଳିକାଟି ଦିନେ ଦର ଦର ଚିଠା ପାନଖିଲଟି ଆଣି ତାହାର କୋମଳ ହସ୍ତରେ ଦେଇଥିଲା, ସେହି ବାଳିକାଟିକୁ ସେ କିପାଁ ଅବଧି ଭୁଲି ନାହିଁ ? ମଣିଷ କଣ ମଣିଷକୁ ଏତେ ପ୍ରେମ କରି ପାରେ ? ସୀତା ତାକୁ ପ୍ରେମ କରିଥିଲା ସତ, କିନ୍ତୁ ସେ ପ୍ରେମ କଣ ଆଉ ଅଛି ? ସୀତା ତାକୁ ଭୁଲିଛି, ବିବାକରର ମୃତ୍ୟୁଶଯ୍ୟାରେ ରଘୁନାଥ ଦେଖିଛି ତାହାର ସ୍ୱାମିପ୍ରେମ, ସୀତା ତାକୁ ନିଶ୍ଚୟ ପାସୋରିଛି, କିନ୍ତୁ ସେ ହତଭାଗ୍ୟ କିପାଁ ତାକୁ ଭୁଲି ନାହିଁ ? ନାରୀ ତବି ଏକନିଷ୍ଠ ସାଧିକା; କିନ୍ତୁ ରଘୁନାଥ ତ ଦେଖିଲା ସୀତାର ପରିବର୍ତ୍ତନ । ତାହାର ଆଶ୍ଚର୍ଯ୍ୟ ସ୍ୱାମିପ୍ରେମ, ଆଶ୍ଚର୍ଯ୍ୟ ଉପବାସ, ସବୁ ରଘୁନାଥର ମନେ ପଡ଼ିଲା । ସୀତାର ହୃଦୟରେ ସେ କଣ ଆଉ ଅଛି ? ତାହାର ବଡ଼ କଷ୍ଟ ହେଲା । ସେ ଶୂନ୍ୟଦୃଷ୍ଟିରେ ନୀଳାକାଶପଟକୁ ଚାହିଁ ରହିଲା ! ହଠାତ୍ ତା ପିଠିରେ କିଏ ହାତ ମାରିଲା । ମାନବ କରସ୍ପର୍ଶରେ ସେ ଚମକି ପଡ଼ିଲା । ପରକ୍ଷଣରେ ଯନ୍ତ୍ରଣସ୍ୱରରୁ ଚିହ୍ନିଲା ନାମୀ ଉପସ୍ଥିତ ଜାଣି ପାରି ସେ ବୁଢ଼ୀକୁ କୁଣ୍ଢାଇ ପକାଇଲା । ବୁଢ଼ୀ କାନ୍ଦି କାନ୍ଦି କେତେ ବାଖ୍ୟାନ ଗଲା । ରଘୁନାଥ ଶାନ୍ତ

ଚେଷ୍ଟାରେ ସୁଦ୍ଧା ତାକୁ ଭୁଲି କରି ପାରିଲା ନାହିଁ । ବୁଢ଼ୀ କାନ୍ଦି କାନ୍ଦି ସ୍ୱରରେ ଗୀତ ଗାଇଲା ପରି କହିଲା—“ମୋ ରାମଚନ୍ଦ୍ର ରେ—କୁଆଡ଼େ ଥିଲୁ ରେ—ଏତେକାଳ ତୋ ବିନା ଅନ୍ଧ ହୋଇ ଥିଲିରେ—ମୋ ରାମଚନ୍ଦ୍ର ରେ !”

ମଣ୍ଡପ ଘରଭିତରୁ ଆଲୁଅ ଆଣି ମୁଗ୍ଧଦୃଷ୍ଟିରେ ପିତେଇକ ଚାହିଁ ରହିଲା । ଏ ବୁଢ଼ୀ କଥା ସେ ତା ସ୍ୱାମୀଠୁ କେଜାଣି ସହସ୍ର ଥର ଶୁଣିଛି । ଆଜି ସେ ବୁଢ଼ୀକି ସାକ୍ଷାତ୍ ଦେଖି ସେ ପ୍ରଣାମ ନ କରି ରହି ପାରିଲା ନାହିଁ । ବୁଢ଼ୀ କୋଟି ଜନ୍ମାୟୁର ଆଶୀର୍ବାଦ କରି ରଘୁବୋହୂକୁ କୁଣ୍ଢାଇ ଘର ଭିତରକୁ ଗଲା । ପିଲାମାନଙ୍କୁ ଗୋଟି ଗୋଟି କରି ନିରୀକ୍ଷଣ କରି ଦେଖିଲା । ସୀତା କଥା ଭାବି ତା ସ୍ମୃତି କାତର ହୋଇ ଯାଉଥିଲା । ଆଜି ଏହି ଘରେ ସୀତା ବୋହୂ ସାମ୍ରାଜ୍ଞୀ ହୋଇଥାନ୍ତା, ଏହି ପିଲାମାନେ ସମ୍ଭବତଃ ତାରି ପେଟରୁ ଜନ୍ମ ହୋଇଥାନ୍ତେ; କିନ୍ତୁ ନିଷ୍ଠୁର ବିଧାତା ସବୁ ସୁଖରେ ବାଦ ସାଧିଲା । ବୁଢ଼ୀ ପୁନର୍ବାର ବର୍ଣ୍ଣନ କରିଲା ସୀତା କଥା । ସୀତା ଅଭାଗିନୀ, ସୀତା ବିଧବା ହେଲା । ଭଲ ହୋଇ ସୁଦ୍ଧା ଯେ ରଘୁକୁ ମନେ ପକାଇ କାନ୍ଦୁଥିଲା, ତା ଛବିଟିକୁ ଚିତ୍ରିତ କରି ରଖିଥିଲା, ସେହି ସୁଲକ୍ଷଣୀ କୋମଳାଙ୍ଗୀ ସୁବର୍ଣ୍ଣ ସୁନ୍ଦରୀ କପାଳରେ ବିଧାତା ସ୍ୱ... ଲେଖିଥିଲା ! ରଘୁନାଥ ଲୁହରେ ତନ୍ମୟ ବୁଡ଼ି ସବୁ ଶୁଣିଲା । ସେ ଦେଶାନ୍ତରୀ, ସେ ଅଜ୍ଞାତ । ତା ସୀତାକୁ ରାବଣ ହରି ନେଲା ସ୍ୱର୍ଣ୍ଣ ଲଙ୍କାରେ ଅଭାଗିନୀ କାନ୍ଦୁଛି ! ବୁଢ଼ୀର ଅଳଙ୍କାର ବୋଲିରେ ରଘୁନାଥର ମର୍ମ ଫାଟି କୋହ ହଟିଲା ।

ତାରାମଣି ବୁଢ଼ୀକି ଭଜନ କରି କହିଲେ—“ମାଉସି ! ଗଳ୍ପ କଥା ଛାଡ଼ । ଯାହା ହବାର ଥିଲା ହେଲାଣି, କର୍ମ କଥା କିଏ କହିବ ?” କିନ୍ତୁ କନ୍ୟାର ମୁଖଚ୍ଛବି ଆଖି ଆଗରେ ନାଚି ଉଠିଲା । ବୁଢ଼ୀ ସେଠୁ ରେବତୀର ଦୁଃଖ ହାଲ ବଖାଣ କରି ବସିଲା । ସରସ୍ୱତୀ ରଘୁନାଥକୁ ଦେଖିବାକୁ ଡାକିଛନ୍ତି ଶୁଣି ରଘୁ ବାଳକ ପରି କାନ୍ଦି ପକାଇଲା ।

ଯେତେବେଳେ ସେ ଆସି ସରସ୍ୱତୀଙ୍କୁ ପ୍ରଣାମ କରି ଶଯ୍ୟାପାର୍ଶ୍ୱରେ ବସିଲା, ତାହାର ସେତେବେଳେ ବାହ୍ୟଜ୍ଞାନ ନ ଥିଲା—ସେ ଜଳକା ପରି ଚାହିଁ ରହିଲା ହତଶ୍ରୀ ଘରଗୁଡ଼ିକୁ । ଏହି ସେହି ରୋଗଶୀର୍ଣ୍ଣା, ନିରାଭରଣା ଦେବୀପ୍ରତିମା ସରସ୍ୱତୀ । ବହୁକ୍ଷଣ କେହି କାହାକୁ କିଛି କହି ପାରିଲେ ନାହିଁ । କେବଳ ଦୁଇଧାର ଲୁହରେ ସରସ୍ୱତୀଙ୍କର ମର୍ମବେଦନା ବୁଝି ପାରିଲା ରଘୁନାଥ । ରେବତୀ ମୁଣ୍ଡରେ ଲୁଗା ଦେଇ ଭାଇକୁ ଓଳଗି ହେଲା । ସେ ତାକୁ ଜମାରୁ ଚିହ୍ନି ପାରିଲା ନାହିଁ । ରେବତୀ ବୋଲି କହି ଦେଲାରୁ ଜାଣି ପାରିଲା । ତାହାର ରଙ୍ଗରୂପ ମୂଳରୁ ଯାଇଛି, ମୁଣ୍ଡରେ ବାଳ ନାହିଁ, ଚନ୍ଦା ହୋଇ ଯାଇଛି । ଗଲା ହାଡ଼ ବାହାରି

ତାଙ୍କ ମୁହଁ ଅତି ବିକୃତ ଦିଶୁଛି । ରଘୁନାଥ ସହାନୁଭୂତିରେ କହିଲା—"କଣ ହେଲୁ ରୁ ?"

"ମୋ କଥା ସତ୍ୟ ଭାଇନା ?" ରେବତୀ ଆଖିରେ ଲୁଗା ଦେଲା । ମାୟା ତାକୁ କୁଣ୍ଢାଇ ଧରି ବହୁତ ଆଦର କଲା—ବହୁତ ବୁଝାଇଲା; କିନ୍ତୁ ପ୍ରବଳ ଅଶ୍ରୁ ପ୍ରବାହରେ ସେ ପଦେ ହେଲେ କଥା କହି ପାରିଲା ନାହିଁ ।

ବାବୁ ଦୁଇ ମାସ ହେଲା ଘରୁ ଚାଲି ଯାଇଛି ବାପର କଚ କଚ ସହି ନ ପାରି । ବକ୍ସିବଜାର ଆଡ଼େ ଅନ୍ୟ ବହାଘର କରି ରହିଛି । ସେ ବସାଟି ଦାମ ବାବୁର । ସମୟେ ସମୟେ ଦିନବେଳେ ଘରକୁ ଆସେ । ଟଙ୍କା କଉଡ଼ିର ଅଭାବ ହେଲେ ନେଇଯାଏ । ଭାର୍ଯ୍ୟାର ଦେହରୁ ସମୁଦାୟ ଗହଣା ଗଲାଣି । ରେବତୀ ତାହା ଭୟରେ ହାତରେ ଦମୁଠା କାଚ ପିନ୍ଧିଛି; କିନ୍ତୁ ସେ ଟଙ୍କା ନ ପାଇଲେ ବାକ୍ସ ଭାଙ୍ଗିବାକୁ ମଧ୍ୟ କୁଣ୍ଠିତ ହୁଏ ନାହିଁ । ତାର କାମ କାର୍ଯ୍ୟ କିଛି ନାହିଁ । ମଦ୍ୟସଙ୍ଗୀ, ତାସ, ପଶା, ନିଶା ଓ ବେଶ୍ୟାରେ ବୁଡ଼ି ରହିଛି । ଏପରି ଯାହାର ସ୍ୱାମୀ, ସେ ସ୍ତ୍ରୀ କାନ୍ଦିବ ନାହିଁ ତ ଆଉ କାନ୍ଦିବ କିଏ ? ମାୟା ସବୁ ଶୁଣି ମନେ ମନେ ତୁଳନା କଲା—ନିଜ ସ୍ୱାମୀକୁ । ସେ ଯେ ସ୍ୱର୍ଗର ଦେବତାର ହାତ ଧରିଛି—ଏହି ଆନନ୍ଦରେ ତା ପ୍ରାଣ ତୃପ୍ତ ହୋଇ ଉଠିଲା

ଦାଣ୍ଡଘରେ ବୁଢ଼ା ଶୋଇଥିଲେ । ରଘୁନାଥ ଦାଣ୍ଡଘରକୁ ଗଲା । ଦେଖିଲା ବୁଢ଼ା ଗାଢ଼ନିଦ୍ରାମଗ୍ନ । ସେ କିଛିକ୍ଷଣ ସେଠି ଅପେକ୍ଷା କଲା । କାନ୍ଥରେ ଦେଖିଲା ଗୋଟିଏ ଆଲୋକଚିତ୍ର । କଡକ ଯାଇ ଦେଖିଲା ସୀତା ଓ ଦିବାକର, ଗୋଡ଼ତଳେ ଅମୂଲ୍ୟମୋହନ । ତାହାର ବକ୍ଷ ବିଦୀର୍ଣ୍ଣ ହୋଇ ଗୋଟିଏ ଗଭୀର ଦୀର୍ଘଶ୍ୱାସ ବାହାରିଲା । ଠିକ ଏହାପରି ସେ ସୀତା ପାର୍ଶ୍ୱରେ ଶୋଭା ପାଇଥାନ୍ତା; କିନ୍ତୁ ଏହି ଶଯ୍ୟାଶାୟୀ ବ୍ୟକ୍ତିଟି ତାହାର ସୁଖ କଳ୍ପନାକୁ ଚୂର୍ଣ୍ଣ କଲା ।

ତାକୁ ଅର୍ଜିତ ବୋଲି ତ୍ୟାଗ କଲା । ରଘୁନାଥର ସବୁ ଗୋଟି ଗୋଟି ପୂର୍ବ କଥା ମନେ ପଡ଼ିଗଲା । ବୁଢ଼ା କରି ମୋଡ଼ି ହାଇ ମାରି ନିଦରୁ ଉଠିଲେ । ରଘୁନାଥ ସମ୍ମୁଖକୁ ଯାଇ ସାଷ୍ଟାଙ୍ଗ ପ୍ରଣାମ କଲା । ବଦ୍ଧିତ ନିଦ୍ରୋତ୍ଥିତ ଚୌଧୁରୀ ପଚାରିଲେ—"କେ ?" ସେ ବିନୀତସ୍ୱରରେ କହିଲା—"ଆଜ୍ଞା, ମୁଁ ଅର୍ଜିତ ରଘୁ ।" ଘରେ ବିଜୁଳି ପଡ଼ିଥିଲେ ବୋଧ ହୁଏ ବୁଢ଼ା ଏପରି ଚମକି ପଡ଼ି ନ ଥାନ୍ତା । ଏପରି ପୁଷ୍ଟଦେହ, ଗୋରା ସୁନ୍ଦର ବଙ୍ଗାଳୀ ବାବୁ, ସୁନା ଚେନ, ସୁନା ଚସମା, ଶୁଭ୍ରପରିଚ୍ଛଦଭୂଷିତ ରଘୁନାଥକୁ ତାଙ୍କ ଗୋଡ଼ତଳେ ପ୍ରଣାମ କରିବାର ଦେଖି ହୃଦୟରେ ଶତ ବୃଶ୍ଚିକର ଜ୍ୱାଳା ଉପସ୍ଥିତ ହେଲା । ଯାହାକୁ ଅର୍ଜିତ ବୋଲି ଶାଁ ଦେଇଥିଲେ, ସେ ବର୍ତ୍ତମାନ ଲକ୍ଷପତି । ଜଗନ୍ନାଥଠୁ ତାହାର ହାଲ-

ସ୍ଥଳ ସବୁ ଶୁଣିଥିଲେ; କିନ୍ତୁ ଦୁଇ ମାସ ହେଲା ତାଙ୍କ ସହିତ କଳି ହେବାରୁ ରଘୁନାଥ ଯେ ଦେଶକୁ ଆସିଛନ୍ତି ଏ ଖବର ପାଇ ନ ଥିଲେ । ଲକ୍ଷପତି ରଘୁନାଥ ନିଜକୁ ରଘୁ ଅରକ୍ଷିତ କହିଲାରୁ ବୁଢ଼ାର ଶେଷ ହେଲା । ସେ କ୍ଷୁବ୍ଧସ୍ୱରରେ କହିଲେ—"ଆଉ ବୁଢ଼ାଟାକୁ ପରିହାସ କର ନାହିଁ ବାପ ! ଏବେ ମୁଁ ଅସ୍ଥିତ ।" ଏହା କହି ସେ ଭେ ଭେ ହୋଇ କାନ୍ଦି କୋଇଲେ । ତାଙ୍କର ହୃଦୟରୁଦ୍ଧ ଜ୍ୱାଳା ଅଶ୍ରୁ ଆକାରରେ ବହିଗଲା ପରି ? ବାବୁ ଯେତକ ବେଳକୁ ଘର ଭିତରକୁ ପଶି ଆସିବାରୁ ରଘୁନାଥ ତାଙ୍କୁ କୁଣ୍ଢାଇ ଧରିଲା । ବହୁଦିନ ପରେ ଦୁଇ ସଙ୍ଗୀଙ୍କର ମିଳନ । ରଘୁନାଥ ନିକଟରେ ନିଜ ଅଧଃପତନର ଲଜ୍ଜାରେ ବାବୁ ଏକାବେଳକେ ମୁଣ୍ଡ ତଳକୁ ପୋତି ରହିଲା । କିଏ ଯେ କାହାକୁ କଣ କହିବ, କାହା ତୁଣ୍ଡରୁ ପଦେ ହେଲେ କଥା ଫୁଟିଲା ନାହିଁ । ତାଙ୍କ ଦୁହିଙ୍କୁ ବଲ୍ ବଲ୍ କରି ଚାହିଁ ରହିଲେ ଅନୁତପ୍ତ ଚନ୍ଦ୍ରଶେଖର ଚୌଧୁରୀ ।



# ତ୍ରୟସ୍ତ୍ରିଂଶ ଅଧ୍ୟାୟ ।



ଗୋରୁପଲ ବାଣ୍ଡରେ ହମ୍ବାରଡ଼ି ଗ୍ରାଡ଼ି ଗୋଠରୁ ଫେରିଲେଣି । ଗୋରୁ ଗୋଟି୨ ଗଣତି କରି ଗୁହାଳରେ ବାନ୍ଧିବାକୁ ଯେବେ ଠାକୁର ନରିଆ, ଜେମା ସଞ୍ଜବତୀଟା ଜାଳି ଦୁଆରେ ଦୁଆରେ ଥୋଇ ଗଲାଣି । ଶଙ୍କରୀ ଦୁଆରକୁ ଆସି ଦେଖିଲା, ସେ ଖଟରେ ମୁହଁମାଡ଼ି ମୁଚୁଳାଟା କୁଣ୍ଢେଇ ଶୋଇଛନ୍ତି । ମଝିଆଁ ସାଆନ୍ତାଣୀଙ୍କୁ ଡାକଟାଏ ଦେଇ ଭିତରକୁ ପଶିଗଲା । ଜେମା ଆଗର ଆଉ ସେ ଜେମା ନୁହେ, କି ଶଙ୍କରୀ ପୂର୍ବର ସେ ଶଙ୍କରୀ ନୁହେ । ଦିବାକର ଉଭୟଙ୍କୁ ତ୍ୟାଗ କଲା ଦିନୁଁ ସେ ଦୁହିଙ୍କର ଦୁଇ ଭିନ୍ନ ଦିଗରେ ପରିବର୍ତ୍ତନ ହୋଇଛି ।

ଜେମା ଯେତେ ହେଲେ ଦାସୀ । ଭାତ ଲୁଗା ପାଇଁ ତାର ଖଟଣୀ, ତା ଭାଗ୍ୟକୁ ସାଆନ୍ତପାଖଲଗା ପୋଇଲି ହୋଇଥିଲା । ଏବେ ଭାଗ୍ୟ ଆଦର ଭଣ୍ଡାରଘରିଆ ଉଚ୍ଛବାର ଶରଣ ପଶିଛି । ଉଚ୍ଛବାର ବୟସ ଚବିଶ ପଚିଶ । ଗଉଡ଼ ଟୋକା, ବର୍ଣ୍ଣ ଶ୍ୟାମଳ ହେଲେ ସୁଦ୍ଧା ଦେଖିବାକୁ ସୁନ୍ଦର । ପିଲାଦିନୁ ସାଆନ୍ତ ଘରେ ବଢ଼ିଛି । ପେଟର ଚଲାଖ, ସେପରି କୁଟନୀ । ସେ ମଝିଆଁ ସାଆନ୍ତାଣୀଙ୍କର ପ୍ରିୟ ଭୃତ୍ୟ ।

ଶଙ୍କରୀ କିନ୍ତୁ ବିବାହିତା ଭାର୍ଯ୍ୟା । ସ୍ୱାମି ତ୍ୟକ୍ତା ହେଲାଦିନୁଁ ସୀତା ଭିତରେ ସେ ଜଳି ମରୁଛି । ତାର ଦେହ ଗୋଟାକ କଙ୍କାଳ ପାଲଟି ଯାଇଛି । ଗାତବନ୍ଦୀ ନାଗୁଣୀ ପରି ସେ ଫଁ, ଫଁ ହୋଇ ବୁଲୁଛି । ଦେଖ ପାଇଲେ କେବେ ଯେ କାହାକୁ କାମୁଡ଼ିବ ଜଣା ନାହିଁ । ପନ୍ଦର ବର୍ଷ ହେଲା ଯେ ସେ କିମିତି ଜୀବନ କାଟିଛି, ତାହା ତାକୁଇ ଜଣା । ସ୍ୱାମୀକି କଣ ସେ ଊଣା ପ୍ରେମ ଭକ୍ତି କରିଥିଲା, ସ୍ୱାମୀ ତାର ଜୀବନର ଧନ, ନୟନର ମଣି, ସ୍ୱାମୀ ବିନା ସେ କିଛି ଜାଣେ ନାହିଁ, ସ୍ୱାମୀ ତାର ଜ୍ଞାନ ଧ୍ୟାନ, ହେଲେ ସେଇ ସ୍ୱାମୀ ତାକୁ ତ୍ୟାଗ କଲେ । ତାହାର ଆଖି ଆଗରେ ଅନ୍ୟ ଭାର୍ଯ୍ୟା ନେଇ ସୁଖରେ ଘର କଲେ । ଦିନେ ତାକୁ ପଚାରିଲେ ନାହିଁ ସେ ମଲା କି ଗଲା । ଏହା ନାରୀ ହୋଇ ସେ କିପରି ସହନ୍ତା ? ନାରୀର ପ୍ରାଣ କଣ ତାଠେଇଁ ନାହିଁ ? ନାରୀର ପ୍ରେମ କଣ ତା ଆତ୍ମା ମଧ୍ୟରେ ନାହିଁ ? ତାର କଣ ଅଭାବ ? ଖାଦ୍ୟ, ପଟ୍ଟବସ୍ତ୍ର, ବହୁମୂଲ୍ୟ ସୁବର୍ଣ୍ଣାଳଙ୍କାରରେ ସେ ପରିପୂର୍ଣ୍ଣ; କିନ୍ତୁ କେତେ ଦିନ ସେ ଉପବାସରେ

କାନ୍ଦିଛି, ତା କିଏ ଜାଣେ ? ତା ଢେଣ୍ଡା ତଳକୁ ଯେଉଁ ଝଗର ଗଛଟି ଅଛି, ସେହି ତାର ସାକ୍ଷୀ, ଆଉ ସାକ୍ଷୀ ପିଞ୍ଜରାର ଶୁଆଟି । ଶଙ୍କରୀ ଶୁଆକୁ ହରିନାମ ପରି-ବର୍ତ୍ତରେ 'ସାଆନ୍ତ' ଶବ୍ଦଟି ଶିଖାଇଥିଲା; ଶୁଆ ସର୍ବଦା 'ସାଆନ୍ତ ଆସ', 'ସାଆନ୍ତ କଥା କହ', 'ସାଆନ୍ତ ଏଇବାଟେ ଯାଅ', କହି ବୋବାଉଥାଏ । କିନ୍ତୁ ଦିବାକର ଦିନେ ସେ ସବୁ କଥା କାନକୁ ଘେନ ନାହାନ୍ତି । ସର୍ଯ୍ୟାର ହୃଦୟରେ ଯେଉଁ ପ୍ରେମ ତାଙ୍କର ଅପେକ୍ଷା କରି ରହିଥିଲା, ତାହାର ପରିତୃପ୍ତି କେବେ ସାଧନ କରି ନାହାନ୍ତି । ସେ ସୀତାଗତପ୍ରାଣ, ସୀତା ଦେହରେ କଣ୍ଟା ଫୁଟିଲେ ତାଙ୍କ ଦେହରେ ଜହ୍ଲୁରୀ ଗୁଲିଗଲା ପରି ଲାଗୁଥିଲା । ପୁଣି ତହିଁ ଉପରେ ତାହାର ପରମ ସୁନ୍ଦର ପୁତ୍ର ଜମିଦାରୀର ଉତ୍ତରାଧିକାରୀ ଅମୂଲ୍ୟମୋହନ । ଅମୂଲ୍ୟମୋହନ ଦିବାକରର ପ୍ରାଣଧନ । ତାହାର ପ୍ରତି ଅବୟବକୁ ସେ ପରମ ସ୍ନେହରେ ନିରୀକ୍ଷଣ କରୁଥିଲେ; ମାତ୍ର ଶଙ୍କରୀର ସେଇଟା ଦାରୁଣ ଅସହ୍ୟ ବୋଧ ହେଉଥିଲା । ସନ୍ତାନହୀନା ସନ୍ତାନର ସ୍ନେହ ଲାଗି ତୃଷିତା ହୋଇ ଉଠିଲା । ତହିଁରେ ପୁଣି ସଉତୁଣୀର ପୁଅ । କଥାରେ କହନ୍ତି—'ସଉତୁଣୀ ଥାଉ, ସଉତୁଣୀ କଣ୍ଟା ନ ଥାଉ ।' ସେ ଅମୂଲ୍ୟକୁ ଦୁଇ ଆଖିରେ ଦେଖି ପାରୁ ନ ଥିଲା ।

ସୀତା କଲିକତାରେ ସ୍ୱାମିଧନକୁ ବିସର୍ଜନ ଦେଇ ଆସିଲା, ଶଙ୍କରୀ ମଧ୍ୟ ବୈଧବ୍ୟ ଚିହ୍ନ ଧାରଣ କରି ବସିଲା । ବିଶାଳ ଶୂନ୍ୟ ପୁରୀରେ ଦାସଦାସୀ-ବେଷ୍ଟିତା ଦୁଇଟି ବିଧବା ଓ ଜମିଦାରୀର ଉତ୍ତରାଧିକାରୀ ଅମୂଲ୍ୟମୋହନ ସୁଖ ଦୁଃଖରେ କାଳ କାଟିଲେ । ସୀତା ସମୟ କାଟୁଥିଲା ପୁତ୍ରର ମୁଖକୁ ଚାହିଁ । ତାହାର ସ୍ୱାମୀ ଯାଇଛନ୍ତି ସତ, ଆଖି ଉପରେ କିଶୋର ପୁତ୍ର ବିଦ୍ୟମାନ, ତାହାର ସେବା, ତାହାର ଚର୍ଚ୍ଚାରେ ସୀତା ତନ୍ମୟ ହୋଇଗଲା । ଏଡ଼େ ବଡ଼ ଜମିଦାରୀ, ବୃହତ୍ ଉଆସ, ଅସଂଖ୍ୟ ଦାସ ଦାସୀ, ସେ ସବୁ ତତ୍ତ୍ୱାବଧାନ କିଏ କରିବ ? ତାହାର ଶୋକ କରିବାକୁ ବେଳ ନ ଥିଲା । ମହା ସମାରୋହରେ ସ୍ୱାମିର ଶ୍ରାଦ୍ଧ ସଂପନ୍ନ କରି ସେ ଏଥର ଲାଗିଗଲା ଜମିଦାରୀ ବୁଝାସୁଝାରେ । ନାଏବ ବୁଢ଼ା ଦୁର୍ଗାଚରଣ ମହାନ୍ତି ଅନ୍ଦରମହଲକୁ ଆସି ସାନ ସାଆନ୍ତ ଓ ମା ସାଆନ୍ତାଣୀଙ୍କୁ ଜମିଦାରୀର ସମୁଦାୟ ହିସାବ ପତ୍ର ଦିଅନ୍ତି । ତାହାର ଶାସନରେ ଦାସ ଦାସୀ ମଧ୍ୟରେ ଆତଙ୍କ ପଶିଥିଲା । ଆଗେ ଉଆସରେ ଅଳସ, ଅକର୍ମଣ୍ୟ ଦାସ ଦାସୀ ଅକାରଣ ଅନ୍ନଧ୍ୱଂସ କରି ପଡ଼ିଥାନ୍ତି, ଅଥଚ ବାର ଆଡ଼ର କଳି ଓ ପରଚର୍ଚ୍ଚା ଘୋଷାଇ ଉଆସର ଶାନ୍ତି ନଷ୍ଟ କରନ୍ତି । ସୀତା ନିଜ ହାତରେ କର୍ତ୍ତୃତ୍ୱ ନେଲା ଦିନୁ ପ୍ରଥମେ ସେହିମାନଙ୍କୁ କାଢ଼ିଲା । ଉଚ୍ଛନ୍ନ କର୍ମଚ୍ୟୁତ ହୋଇ ଶଙ୍କରୀର ଆଶ୍ରୟ ନେଲେ । ଜେମା ତ ବହୁକାଳରୁ ଚାକିରିରୁ ବରଖାସ୍ତ ହୋଇ ଥିଲା । ଦୁହିଁଙ୍କର ପ୍ରତିହିଂସାବହ୍ନି ଏତିକବେଳେ ପ୍ରଜ୍ୱଳିତ ହେଲା । ସେଥିରେ ପ୍ରଧାନ ସହାୟ ହେଲେ ଶଙ୍କରୀ ।

ଶଙ୍କରୀ ନିଦରେ ଶୋଇ ନ ଥିଲେ, ଜେମାର ଡାକ ଶୁଣି ବସି ପଡ଼ି କହିଲେ—"କି ଲୋ ! ଉଚ୍ଛବା ଅଇଲୁଣି ?" ଜେମା ହସି ଦେଇ କହିଲା— "ଏତେବେଳଯାଏ ?" ହେଠୁ ଶଙ୍କରୀ ତାକୁ କଡ଼କୁ ଡାକି କହିଲେ—"ସାବଧାନ, ତତେ ମହାପ୍ରଭୁଙ୍କ ରାଣ, କାହାକୁ ଭୁଣ୍ଡ ଦାଖଣ୍ଡ କରିବୁନାହିଁ, ଉଚ୍ଛବାକୁ ବି ସେହି ରାଣ ଦେଲି । ତମକୁ ମୁଁ ଯାହା ଦେବି—ଚିରଦିନ ବସି ଖାଇବ—ହେଲେ ଏଇ କଥାଟି ଗୁପ୍ତ ରଖ ।"

ଜେମା ବାରଂବାର ଆଖି କାନର ରାଣ ପକାଇ କହିଲା—"ସାଆନ୍ତାଣି ! ମୁଁ କହିବି ? ତମେ ଯେତିକ ଜାଣିଚ ମୁଁ କଣ ସେତିକ ଜାଣି ନାହିଁ ?" "ତୁ ମୋ ଜଳାଟା କଣ ବୁଝିବୁ ଲୋ ଜେମା ! ରାକ୍ଷସୁଣୀ, ଅଣ୍ଟିରଆଣୀ ମୋର ସୁନାଘର ଚୂନା କଲା—ମୋ ସ୍ୱାମିଙ୍କ କୁକୁର କଲା, ତା ପେଟରେ କଟକ ଜଡ଼ ପକେଇଲା; ନଇଲେ ଆଉ କିଏ ସ୍ୱାମିଙ୍କ ଏପରି ବଶ କରୁ ନାହିଁ ? ଆମେ ଆଉ ସ୍ୱାମିର ଭାରିଯା ହୋଇ ନ ଥିଲୁ ? ମୁଁ କଣ ତାଙ୍କୁ ଶରଧା କରୁ ନ ଥିଲି ? ମତେ ସେ ଆଉ ଆଖିରେ ଅନାଇଲେ ? ବଳବୟସ ସବୁ ସାରିଲି—ପନ୍ଦର ବର୍ଷ ଝୁରିଝୁରି ମଲି । ଆଉ ପଚାରୁଚୁ ଲୋ ଜେମା ମୋ ଜଳିବା କଥା ! ରାଣ୍ଡ, ଅଲକ୍ଷଣୀ ମୋ ସ୍ୱାମିଙ୍କ ଖାଇଲା, ଏବେ ପୁଅ ଧରି ଥେଇକ ଥେଇକ ହଉଚି । ଦେଖିବ ଲୋ ବଡ଼ା ସୁଆଗଟା ! କେତେଦିନ ଆଉ ପୁଅର ମା ହୋଇ ମୋ ଗ୍ରୀବ ଉପରେ ଫୁଲେଇ ହୋଇ ବସିବୁ !"

ତା ଆଖିରେ ରାକ୍ଷସୀ ନିଆଁ ଜଳି ଉଠିଲା । ସେ ରକ୍ତର ପିପାସାରେ ଯେପରି ଅଧୀର ହୋଇ ଉଠିଲା, ତାକୁ ଦେଖି କିଏ ମନେ କରିବ, ସେହି ସେ ସାଧୁପ୍ରକୃତି ଶଙ୍କରୀ ? ଯାହାକୁ ଶହେ ମାଡ଼ ମାଇଲେ କଥା ପଦେ ପାଟିରୁ ବାହାରେ ନାହିଁ, ପ୍ରତିହିଂସା ଏବେ ତାକୁ ବାଘୁଣୀ କରିଛି । ଦିବାକର ମଲାଦିନୁଁ ସେ ଆହୁରି ଭୟଙ୍କର ହୋଇଛି । କପରି ଯେ ସୀତା ଉପରେ ଦାଉ ସାଧିବ ଭାବି ବୁଲୁଛି ।

ସୀତା ଏଥର ଜାଣିଲା ସଉତୁଣୀ ଜ୍ୱାଳା କପରି । ଶଙ୍କରୀର ବାକ୍ୟ-ବାଣରେ ସେ ବଡ଼ ମର୍ମାନ୍ତିକ ବ୍ୟଥା ପାଇଲା । ତାକୁ ଦେଖିଲା ମାତ୍ରେ ସେ ରଗ ପକାଇ ଉପରେ ପଡ଼ି ହେଲେ ତା ସହିତ କଳି କରେ । ସୀତା ଅମୂଲ୍ୟ ମୁହଁକୁ ଚାହିଁ ସବୁ ତୁନି ହୋଇ ସହିଲା; ମାତ୍ର ସାଆନ୍ତାଣୀର ଅପମାନ ଦାସ ଦାସୀ କିଆଁ ସହିବେ ? ତାର ଦାସ ଦାସୀ ଓ ଶଙ୍କରୀର ଦାସ ଦାସୀ ମଧ୍ୟରେ ସର୍ବଦା ଭୀଷଣ କଳହ ଲାଗି ରହିଲା—ମାଡ଼ ମରାମରି ପର୍ଯ୍ୟନ୍ତ ଗଲା । ତଥାପି ସୀତା ଅମୂଲ୍ୟ ମୁହଁକୁ ଚାହିଁ ସବୁ ସହିଲା ।

ଅମୂଲ୍ୟ ସୀତାର ପୁଅ ହେଲେ ମଧ୍ୟ ସାବତ ମାକୁ ଭଲପାଏ । ତାହାର ପ୍ରକୃତି ଅତି କୋମଳ । ପନ୍ଦର ବର୍ଷର ପିଲା, ଜଗତର ଛନ୍ଦ କପଟ ବା ସେ କାହୁଁ ଜାଣିବ ? ଶଙ୍କରୀ ସୀତା ସହିତ କଳହ କରେ, ମାତ୍ର ଅମୂଲ୍ୟ ପ୍ରତି ବଡ଼ ସ୍ନେହ ଦେଖାଇଥାଏ । ପ୍ରକାଶ୍ୟରେ କହେ 'ମୋ ସ୍ୱାମିର ପୁଅ କଣ ମୋର ନୁହେଁ ?' ଅମୂଲ୍ୟ ମଧ୍ୟ ସାବତ ମା ପ୍ରାଣରେ ତା ପ୍ରତି କିଛି କୂଟ ଅଛି ବୋଲି କେବେ କଳ୍ପନା କରି ନାହିଁ ।

ଶଙ୍କରୀ ଶଯ୍ୟା ତ୍ୟାଗ କରି ଉଠି ମୁହଁ ଧୋଇଲା, ପିଣ୍ଡାରେ ବୁଲିଲା— ଗଭୀର ଚିନ୍ତାରେ ତା ମନ ପୂର୍ଣ୍ଣ । ଜେମାର ପରାମର୍ଶରେ ସେ ଭୁଲିବ କି ନାହିଁ ଏହାହିଁ ତାହାର ଚିନ୍ତାର ବିଷୟ । କିଛିଦିନ ହେଲା ପଦ୍ମପୁର ଗାଁକୁ ଗୋଟିଏ ସିଦ୍ଧ ଯୋଗୀ ଆସିଛନ୍ତି । ସେ ନାନାପ୍ରକାର ହିକୁମ ଔଷଧ ଜାଣନ୍ତି । ଅନେକ ଦୁରାରୋଗ୍ୟ ରୋଗୀ ତାଙ୍କ ଠାରୁ ଔଷଧ ନେଇ ଭଲ ହେବାର ଶୁଣା ଯାଉଛି; ଏପରି କି, ସେ କୁଷ୍ଠ, କ୍ଷୟକାଶ, ଗୋଦରୋଗ ବାତ ସୁଦ୍ଧା ଭଲ କରି ଦେଉଛନ୍ତି । ତାଙ୍କ ଔଷଧ ଫଳରେ ବନ୍ଧ୍ୟା ସନ୍ତାନବତୀ ହେଉଛି, ସ୍ୱାମି ତ୍ୟକ୍ତା ସ୍ୱାମିକୁ ବଶ କରି ପାରୁଛି । ହାୟ ! ବଡାକର ଜୀବିତ ଥିବା ସମୟରେ ଯଦି ଏପରି ମହାପୁରୁଷ ସେ ଗାଁକୁ ଆସିଥାନ୍ତେ, ତେବେ ତ ଶଙ୍କରୀ ନିଶ୍ଚୟ ଇଷ୍ଟଲାଭ କରି ପାରିଥାନ୍ତା । ବର୍ତ୍ତମାନ ଗତ କଥା ମନେ ପକାଇ କପାଳ ଠୁକି ଲାଭ କଣ ? ସେ ଯୋଗୀ ବଶୀ-କରଣ ମନ୍ତ୍ର ଯେତିକି ଜାଣନ୍ତି, ଜାରଣମାରଣ ବିଦ୍ୟା ମଧ୍ୟ ତାଙ୍କଠି ସେତିକି । ସେଇ କଥା ଶୁଣିଲାବେଳୁ ଶଙ୍କରୀ ଓ ଜେମା ମୁଣ୍ଡରେ ଗୋଟାଏ ଦୁଷ୍ଟବୁଦ୍ଧି ପ୍ରବେଶ କରିଛି । କୌଣସି ଉପାୟରେ ଯଦି ସେମାନେ ମା ପୁଅକୁ ଉଚ୍ଛେଦ କରି ପାରନ୍ତେ ? ଉଚ୍ଛବା ଯୋଗୀ କତିକି ଯାଇ ଖଣ୍ଡେ ମୂଳ ଆଣିଛି, ତାକୁ ଭଲ ପାଉଣା ମଧ୍ୟ ଦେଇ ଆସିଛି । ଯୋଗୀ କହିଛି, ଖାଇବା ଦ୍ରବ୍ୟରେ କିମ୍ବା ପାନରେ ଏ ମୂଳଟି ଦେବାକୁ ହେବ । ଯାହା ନାଁ କରିଦେବ, ସେ ଲୋକ ଜୀବନ ଥାଉ ତାହାର ଗୁଇ ମାଡ଼ିବ ନାହିଁ । ଚେରଟି ପାଇଲାବେଳୁ ଶଙ୍କରୀ ଗଭୀର ଚିନ୍ତାନ୍ୱିତା । 'ସତେ ସେ ଦେବ ? ହଁ ସାନ ଚେର ଖଣ୍ଡେ ତ ! କେଉଁ କୌଶଳରେ ଯଦି ପାନ ଖଣ୍ଡିକରେ ଦେଇ ଦିଏ, ଅମୂଲ୍ୟ କଣ ଜାଣି ପାରିବ ? ସେ ପିଲା ଲୋକ, ତାକୁ ଏତେ ଭିତର କଥା କଅଁ ମାଲୁମ ହବ ?' ପୁଣି ଭାବିଲା, 'ଚେରଟା ବିଷ ନୁହେ ତ ?' ମନ କହିଲା 'ବିଷ ହେଲେ କଣ ଯୋଗୀ ସିଦ୍ଧ ମହାପୁରୁଷ ଏଡ଼େ ପ୍ରତିଜ୍ଞା କରି ଦିଅନ୍ତେ ? ଶହ ଶହ ଲୋକଙ୍କୁ ଯେ ନିତି ଭଲ କରୁଛନ୍ତି, ତା ପାଇଁ କଣ ଖଣ୍ଡେ ବିଷ ପଠାନ୍ତେ, ପୁଣି ନଗଦ କୋଡ଼ିଏ ଟଙ୍କା ନେଇ ?' ଯୋଗୀ କହିଛନ୍ତି— 'ଚେରଟି ଗୁଣ ଆଠଦିନ ମାତ୍ର ରହିବ, ତେଣିକି ଦେଲେ କିଛି ଫଳ ହେବ ନାହିଁ ।' ଶଙ୍କରୀ ଛଅଦିନ ଯାଏ କେବଳ ଭାବିଲା—'ସେ ଚେରଟି ଦେବ କି ନାହିଁ ?' କିନ୍ତୁ ଭୟରେ ତା ହାତ ଗଲା ନାହିଁ । ଜେମା ତା ଭୟ ଦେଖି ପରିହାସ

କଲି । ଅଚ୍ଛବା ଭିତରେ ଭିତରେ ବହୁତ ମଣାଇଲା । ଏମିତି ଯଦି ଜଗତଯାକ ମରି ଯାଉଥାନ୍ତେ, ତେବେ ଆଉ ଔଷଧ ମହୌଷଧି କେବେ କରନ୍ତେ କି ? ସବୁ ଔଷଧ ତ ଚେର ମୂଳରୁ ହିଁ ଆସେ । ତଥାପି ଶଙ୍କରୀର ହାତ ଗଲା ନାହିଁ ।

ସେତେବେଳକୁ ରାତି ନଅଟା । କେମା ପୁଣି ଥରେ ଆସି ତା ଦୁଆରେ ଡାକିଲା—"ମଝିଆଁ ସାଆନ୍ତାଣି ! ଶୋଇଲଣି କି ?" ସାଆନ୍ତାଣୀ ଉଠି ଦୁଆର ଫିଟାଇଲେ । ଦାସୀ ଭିତରେ ପ୍ରବେଶ କଲାରୁ କବାଟ କଳି ଦେଲେ । କେମା ଅନୁନୟ କରି କହିଲା "ଆଉ ଗୋଟିଏ ଦିନ । ଶେଷିକି ତମେ ଜାଣ ! ତା ଗୁଣ ତ ଭୁଲିଯିବ ।" ଶଙ୍କରୀ ଭୟରେ କହିଲା "ମୁଁ ଦେଇ ପାରିବି ନାହିଁ ଲୋ କେମା ! ଟୋକାଟା ମତେ ବଡ଼ ଦୁଃଖ ଦାଏ, ବିଷ ଫିସ ହୋଇଥିବ, ଜାଣୁ ଜାଣୁ କଣ ସ୍ୱାମୀର କୁଳ ବୁଡ଼େଇବି ?" କେମା ତାର ଭୟ ଦେଖି କହିଲା—"ଆଣ ଦିଅ, ମୁଁ ଦେବି, ତମର ଯୋଉ ଡର !" ଶଙ୍କରୀ କିଛି ଉତ୍ତର ନ ଦେଇ ଚୁପ ହୋଇ ରହିଲା । କେମା ବଳେ ବଳେ 'କୁଞ୍ଚି କାଠିଟା ନେଇ ଆଲମାରୀ ଫିଟାଇ ଚେର ଖଣ୍ଡିକ ନେଇଗଲା । ଶଙ୍କରୀ କିଛିବେଳ ଚୁପ ହୋଇ ବିଛଣାରେ ପଡ଼ିଲା, ସେ ରାତିରେ ଯେମିତି ପଡ଼ି ରହିଲା, ତା ପାଖିକି ନିଦ ଗଲା ନାହିଁ । ଭାବିଲା 'ଯଦି ବିଷ ହୋଇଥାଏ, ଯଦି ଅମୂଲ୍ୟ ମରିଯାଏ, ତାହା ହେଲେ ତ ସର୍ବନାଶ, ଦୁର୍ଭାବନାରେ ତା' ପ୍ରାଣ କମ୍ପି ଉଠିଲା । ବଡ଼ ପାହାନ୍ତାରୁ ସେ ଉଠି ବାଡ଼ି ଅଗଣା କୂଅମୂଳକୁ ଗଲା । ଗାଧୁଆ ସାରି ଫୁଲ ଦିଓଟି ନିଜ ହାତରେ ତୋଳି ଦିଅଁ ପୂଜି ବସିଲା । ଜଗନ୍ନାଥଙ୍କ କତିରେ ବାରମ୍ବାର ମୁଣ୍ଡିଆ ମାରି ଜଣାଇଲା—'ଟୋକାଟାର ଯେପରି କିଛି କ୍ଷତି ନ ହୁଏ ।' ତା ମନ ତର୍କ କଲା, ମା ସିନା ଶତ୍ରୁ, ପୁଅ ତ ନୁହେଁ, ସେ ତ ତା ସ୍ୱାମୀର ଫଳ । ତା ପୂଜା ସରି ନ ଥାଏ, ଅମୂଲ୍ୟ ଆସି ଦୁଆରେ ଡାକିଲା—"ବଡ଼ ମା ! ବଡ଼ ମା ! ମତେ ଗପ କଣ ଦେବ କହିଥିଲ ଦିଅ । ଶଙ୍କରୀ ଉଠି ଦୁଆର ମେଲି ଅମୂଲ୍ୟକୁ ଭିତରକୁ ଡାକିଲା । ଆଜି ତା ଆଖିରେ ଅମୂଲ୍ୟ ବଡ଼ ସୁନ୍ଦର ଦିଶିଲା । ତାହାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗରେ ସ୍ୱାମୀ ଦେହର ସାଦୃଶ୍ୟ ଦେଖି ତାକୁ ଆଦର କରିବାକୁ ତା ପ୍ରାଣ ଆତୁର ହୋଇ ଉଠିଲା । ସେ ଆପଣା ପୁଅ ପରି ଅମୂଲ୍ୟକୁ ଆପଣା କୋଳକୁ ଆଉଜାଇ ନେଲା, ଟିକି ଆଉଁସି ଦେଲା । ଥାଳିଆରେ ରସଗୋଲା ରଖିଥିଲା, କାଢ଼ି ଖାଇବାକୁ ଦେଲା । ସେଠୁ ସିନ୍ଦୁକ ଫିଟାଇ ଗୋଟିଏ ସୁନାମୁଦି କାଢ଼ିଲା ।

ବଡ଼ ସୁନ୍ଦର ଖୋସବସା ମୁଦି, ସେଥିରେ ଦିବାକରର ନାମ ଅଙ୍କିତ । ସେହିଟି ଶଙ୍କରୀ ନୂଆ ଭୁଆସୁଣୀ ହୋଇ ଆସିଲା ଦିନୁ ତା କତିରେ ଥିଲା । ଦିନେ ସେ ବାକ୍ସ ସଜାଡୁ ସଜାଡୁ ଅମୂଲ୍ୟ ଆଖିରେ ପଡ଼ିଗଲା । ଅମୂଲ୍ୟ ତାହା ନେବାକୁ ବହୁତ ଅଳି କରିଥିଲା, ଶଙ୍କରୀ ଦେଇ ନ ଥିଲା । ମାଝି ଯୋଗୀଠୁଁ ଔଷଧ ଆଣିଲା

ଧନ୍ଁ ମା'ଠୁଁ ଛଡ଼େଇବ ଭାବି ତାକୁ ବେଶି ବେଶି ଆଦର କରିବାକୁ ଆରମ୍ଭ କଲା । ଅମୂଲ୍ୟ ଗଲା ପରେ ତା ମନରେ ହେଲା—'କେମା କଥା ଠିକ୍, ଲୋକେ କଣ ତେଣୁ ମୂକ ଖାଉ ନାହାନ୍ତି, କାହିଁ କାଲିଠୁଁ କେଲାଣି ଏତେବେଳଯାଏ କଣ ଦେଇ ନ ଥିବ ? ଭଷ ହୋଇଥିଲେ——।' ସେ ଆଉ ଭାବି ପାରିଲା ନାହିଁ । ଅମୂଲ୍ୟର ଗୌର ସୁନ୍ଦର ମୁଖ ତା ହୃଦୟରେ ଭାସି ଉଠିଲା । ଏତେଦିନ ଯାହାକୁ ସେ ଲୋକଦେଖାଣିଆ ଆଦର କରିଥିଲା, ଏବେ ତା ପାଇଁ ପ୍ରକୃତରେ ତାହାର ଅନ୍ତର ସନ୍ତାନ ବାତ୍ସଲ୍ୟରେ ପୂର୍ଣ୍ଣ ହୋଇଗଲା । ତାକୁ କୋଳରେ ଧେନ ସନ୍ତାନର ଆକାଂକ୍ଷା ପୂର୍ଣ୍ଣ କରିବାକୁ ତା ପ୍ରାଣ ତୃଷିତ ହୋଇ ଉଠିଲା । ସେ ନିଜେ ଅନୁଭବ କଲା, ସେ ମଧ୍ୟ ମା । ଜନ୍ମ ନ କଲେ ସୁଦ୍ଧା ଜନନୀର ପ୍ରାଣ ତାଠି ଅଛି । ଆତ୍ମାର ଆବେଗରେ ଭାବିଲା—"ଅମୂଲ୍ୟ ମୋର ପୁଅ, ମୋର ସ୍ୱାମୀର ପୁଅ ଯେତେବେଳେ ସେ ମୋର ପୁଅ । ମହାପ୍ରଭୁ ତାକୁ କୋଟି ପରମାୟୁ ଦେଇଥାନ୍ତୁ ।" ମନେ ମନେ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ନମସ୍କାର କରି ସେ ରୋଷେଇ ଘରେ ଯାଇ ବସିଲା ।

ଅମୂଲ୍ୟ ଅତି ସୁନ୍ଦର ମୁଦିଟି ପିନ୍ଧି ଏକାବେଳେ ଦଉଡ଼ି ଗଲା ମା କତିକି । ମା ପୁଅ ପାଇଁ ସେତେବେଳେ ଜଳଖିଆ ସଜାଡ଼ୁଥିଲେ । ପାଖରେ ବସିପଡ଼ି ଡାହାଣ ହାତର ଅନାମିକା ଅଙ୍ଗୁଳି ଦେଖାଇ କହିଲା—"ହେଇ ଲୋ ମା ! ବଡ଼ମା ମତେ କି ସୁନ୍ଦର ମୁଦିଟି ଦେଇଛନ୍ତି ବାପାଙ୍କର । ଅମୂଲ୍ୟ ଦିବାକରଙ୍କର ଶିକ୍ଷା ଫଳରେ ବ୍ରାହ୍ମଣ ଘର ପ୍ରଚଳିତ ମନା ଆଉ ତାକୁ ତାକୁ ନ ଥିଲା । ସୀତା କିଛିକ୍ଷଣ ମୁଦିଟିକୁ ଚାହିଁ କହିଲା—"ବାପା ! ମୁଁ ତତେ ବାରଂବାର ମନା କଲି, ତୁ କାହିଁକି ଶତ୍ରୁ ଦୁଆରକୁ ଯାଉଛୁ କହିଲୁ ?" ଅମୂଲ୍ୟ ହସି ହସି କହିଲା—"କଣ ହେଲା, ସେ ତ ବଡ଼ମା, ବଡ଼ମା କାହିଁକି ଶତ୍ରୁ ହବ ମ ? ତୁମେ ତୁମ ଭିତରେ ବାଡ଼ଆ ପିଟା ହୁଅ ପଛକେ, ମୁଁ ତୋର ଯେମିତି ପୁଅ, ତାର ସେମିତି ପୁଅ । ସେ କଣ ମତେ ଅସୁଖ ପାଏ ?" "ତତେ ଶତ୍ରୁ କି ଅସୁଖ ନ ପାଉ ରେ" ଏହା କହି ସୀତା ଜଳଖିଆ ଥାଳିଆ ଥୋଇଲାକୁ ଅମୂଲ୍ୟ କହିଲା -"ମୁଁ ପରା ବଡ଼ମା କତିରେ ଜଳଖିଆ ଖାଇ ଆସିଛି, ଥାଉ, ପଛେ ଆସିଲେ ଖାଇବି ।"

ସୀତାର ଡାହାଣ ଆଖିଟା ଡେଇଁ ଉଠିଲା । ସେ ଅଶୁଭ ଲକ୍ଷଣ ଭାବି କହିଲା—"ପୁଅ ! ତତେ ଆଉ କେତେ କହିବି ? ଶତ୍ରୁଙ୍କ ଦୁଆରକୁ ଯିବୁ ନାହିଁ, ତାଙ୍କଠୁ କିଛି ଖାଇବୁନାହିଁ, ହେଲେ ତୁ ଶୁଣିଲୁ ପୁଅ ନୋହୁ ।" ସୀତା ପୁଅ ଉପରେ ମାନ ମାରି ମୁହଁ ବୁଲାଇ ଦେଲା । ଅମୂଲ୍ୟ ଆଦରରେ ମାର ଗଳା ଛନ୍ଦି କହିଲା -"ମା ଲୋ ! ତୁ ବୁଝୁନାହୁଁ ବଡ଼ମା ମତେ ଭାରି ସୁଖ ପାଏ, ମୁଁ ଯଦି ତାକୁ ଅଣଦେଖା କରିବି, ଲୋକେ କଣ କହିବେ, ବାପା କଣ ଭାବିବେ ?

ବୈକୁଣ୍ଠରେ ଥାଇ ବାପା କଣ ସବୁ ଦେଖୁ ନାହାନ୍ତି ? ତାଙ୍କ ଅମୂଲ୍ୟ ସୁନାପୁଅ ହବ ଏଇଥିପା ତ ସେ ଚାହାନ୍ତି ?” ବାପର ସ୍ମୃତିରେ ତାର ପଦ୍ମଆଖି ଦୁଇଟି ଓଦା ହୋଇଗଲା । ସୀତାର ଆଖିରୁ ମଧ୍ୟ ପାଣି ବୋହିଲା । ଅମୂଲ୍ୟ ବାଁ ହାତ-ପିଠିରେ ଲୁହ ପୋଛି କହିଲା—“ମାଷ୍ଟର ବାବୁ କହୁଛନ୍ତି, ଏଥର ମୁଁ ପରୀକ୍ଷାରେ ପ୍ରଥମ ହେବ । ଆଉ ଦୁଜା ଛୁଟି ସରିଲା ଯାକେ ଏଠି ରହ ନା, ମୁଁ ଏତେ ସ୍କୁଲ ମାରି କରି ପାରିବ ନାହିଁ ।”

“ତୁ କଟକ ଗଲେ ଏଥର ମୁଁ ତୋ ସାଙ୍ଗରେ ଯିବ ।”

“ତୁ ଏକା ଯିବୁନାହିଁ, ବଡ଼ମାକୁ ସାଙ୍ଗରେ ନବୁ, ସେ ଏକୁଟିଆ କଣ ଏଠି ପଡ଼ି ରହିବ ?”

“ଆଉ ଏ ଘରଗୁଡ଼ାକ କିଏ ଦେଖିବ ରେ ବାପ !”

“କାହିଁକି, ମୋତି ହରକା ରହିବେ ନାହିଁ ? ଲମୋ ନାନାକୁ ରଖି ଯିବୁନାହିଁ ?”

“ଯେତେ ହେଲେ ସେମାନେ ପର ।”

କଲୁ ବଡ଼ମା ଏଠି କାନ୍ଦ ବୋବେଇ ହେଉଥିବ, ଆଉ ଆମେ ମା ପୁଅ କଟକରେ ସୁଖରେ ରହିବୁଁ, ତା ହବ ନାହିଁ । ନୋହିଲେ ମତେ ଅଜା ବସାରେ ଛାଡ଼ ଦେ ? ମୁଁ ମରଦପୁଅ, କଣ ଏକା ଚଳି ପାରିବ ନାହିଁ ?”

ସୀତା ପରମ ସ୍ନେହରେ ପୁଅ ପିଠିରେ ହାତ ବୁଲାଇ କହିଲା—“ତୋର ସେଠି କିଏ ସେବା କରିବ ରେ ?”

ଅମୂଲ୍ୟ ହସିଦେଇ କହିଲା—“ମୋର ସେବା କଣ ଲୋଡ଼ା, ଘଣ୍ଟାଏ ଖାଇବ, ଘଣ୍ଟେ ପିନ୍ଧିବ, ପଢ଼ିବାକୁ ଯିବ । ପିଲଙ୍କ ସାଙ୍ଗରେ ଖେଳିବ ବୁଲିବ । ମୋତିକି ମୋ କତିରେ ଛାଡ଼ ଦବୁ । ମୁଁ ଏକା ଚଳି ପାରିବ ଟି ।”

ଶରଧା ଆସି କହିଲା—“ମାଷ୍ଟର ବାବୁ ଅଇଲେଣି ।” ଅମୂଲ୍ୟ ଧଡ଼ଫଡ଼ ହୋଇ ଉଠି ବହି ଧରି ପଢ଼ିବାକୁ ବାହାରି ଗଲା । ସୀତା ତ ମନରେ ସ୍ନେହି ତାକୁ କୋଟି କୋଟି ସ୍ନେହାଶୀର୍ବାଦ ଦେବାକୁ ଲାଗିଲା । ଏଇ ଖଣ୍ଡିକ ଜଗତରେ ତାହାର ଜୀବନର ଏକମାତ୍ର ଅବଲମ୍ବନ । ଜୀବନରେ ସେ ଯାହା ପାଇଥିଲା, ଯେଉଁମାନଙ୍କ ପାଇଥିଲା, ସମସ୍ତଙ୍କୁ ହରାଇଛି । ଏ ଖଣ୍ଡିକ ଆଜି ତାର ଭରସାରେ

ବଞ୍ଚିବାର କାରଣ, ତାର ଜୀବନସୂତ୍ରର ଗଣ୍ଠି । ମା ପୁଅ ଏକା ଘରେ ଶୁଅନ୍ତି । ଗୋଟିଏ ପଲଙ୍କରେ ସୀତା ଶୁଏ, ଆଉ ଗୋଟିକରେ ଅମୂଲ୍ୟ ଶୁଏ । ବାହାର ପିଣ୍ଡାରେ ମୋତି ଓ ଶରଧା ଶୋଇଥାନ୍ତି ।

ସେତେବେଳେ ରାତି ଦୁଇଟା । ସୀତା ତନ୍ଦ୍ରାଭିଭୂତା । ସ୍ୱପ୍ନ ଦେଖୁଛି, ସେ ଗୋଟିଏ ରମଣୀୟ କାନନରେ ବୁଲୁଛି । ଚାରିଆଡ଼େ ନାନାପ୍ରକାର ଫୁଲଗଛ, ପକ୍ଷିମାନେ ବିବିଧ କାକଳୀନିରତ, ସେ ପରମସୁଖରେ ସେ କାନନରେ ବୁଲୁଛି । ହଠାତ୍ ଗୋଟାଏ ଦିଗରୁ ତାହାର ସ୍ୱାମୀ ଆସି ଉପସ୍ଥିତ ହେଲେ । ଆସି ତାହାର କତିରେ ବସିଲେ । ସେ ସ୍ପଷ୍ଟ ଦେଖିଲା ଗୋଡ଼ତଳେ ତାହାର ଶିଶୁ ଅମୂଲ୍ୟମୋହନ ଖେଳୁଛି, ପିଲା ତା ମୁହଁକୁ ଅନାଇଁ ହସି ହସି କୋଳରେ ଝାମ୍ପି ପଡ଼ିବାକୁ ଚେଷ୍ଟା କରୁଛି । ସେତେବେଳେ ନବୀନ ସୂର୍ଯ୍ୟୋଦୟର ମଧୁର କିରଣରେ ଆକାଶମଣ୍ଡଳ ବ୍ୟାପ୍ତ । ସୀତା ପୁଅ ମୁହଁକୁ ଚାହିଁ ହସୁଛି । ଦିବାକର କହିଲେ—"ସୀତା, ମୁଁ ପୁଅକୁ ନେଇ ଯାଉଛି !" ଏହା କହି ପିଲାକୁ କୋଳକୁ ନେଲେ । ହଠାତ୍ ଚାରିଆଡ଼ ଅନ୍ଧାର ହୋଇଗଲା । ଭୟଙ୍କର ମେଘ—ବିଜୁଳି—ବଜ୍ରନାଦ । ସେ ରମ୍ୟ ଉପବନ, ସେ ବିହଙ୍ଗକାକଳୀ ଲୁଚିଗଲା । ସୀତା ସେ ଅରଣ୍ୟରେ ଏକାକୀ, ତାର ସ୍ୱାମୀ ନାହିଁ—ତାର ପୁଅ ନାହିଁ; କିନ୍ତୁ ପାଦ କତିରେ ପ୍ରକାଣ୍ଡ କଳା ନାଗସାପ ଝାମୁଡ଼ିବାକୁ ଫଣା ବିସ୍ତାର କରି ମୁଣ୍ଡ ଟେକି ଛିଡ଼ା ହୋଇଛି ।

ଚିତ୍କାର କରି ତାର ନିଦ ଭାଙ୍ଗିଗଲା । ଝାଳରେ ଦେହ ଗୋଟାସୁଦ୍ଧା ବୁଡ଼ିଗଲା । ତାର ଚିତ୍କାରରେ ମୋତି, ଶରଧା ଉଠି ଧାଇଁ ଆସିଲେ । ଦୀପ ଜାଳି ଦେଖିଲେ, କାହିଁ କିଛି ନାହିଁ । ଘରର ଅନ୍ଧି ସନ୍ଧି ସବୁ ଖୋଜିଲେ, ମାତ୍ର କିଛି ମିଳିଲା ନାହିଁ । ମାତାର ଚିତ୍କାରରେ ଅମୂଲ୍ୟ ଆଖି ମେଲାଇଲା । ମା, ମା କହି କାନ୍ଦି ଉଠିଲା । ସୀତା ଖଟ କତିକି ଯାଇ ପଚାରିଲା—"ବାବା !" ଅମୂଲ୍ୟ କାନ୍ଦି କାନ୍ଦି ହୋଇ ବସି ପଡ଼ି କହିଲା—"ମା, ଦେହ ପୋଡ଼ି ଯାଉଛି; ମୋ ମୁଣ୍ଡ କଣ ହଉଛି ।" ଆଉ କହି ପାରିଲା ନାହିଁ, ସେ ମୂର୍ଚ୍ଛା ହୋଇଗଲା । ଉଆସର ସମସ୍ତେ ଘେରି ବସିଲେ । କାନ୍ଦ ବୋବାଳି ଚହଳରେ ଶଙ୍କରୀ ମଧ୍ୟ ଆପଣା ଘରୁ ବାହାରି ଆସିଲା । ତାକୁ ଦେଖି ସୀତା ହୃଦୟରେ ବଡ଼ବାନଳର ଶିଖା ଜଳି ଉଠିଲା । ସେ ଚିତ୍କାର କରି କହିଲା—"ଆଉ କଣ ଦେଖି ଆସିଛୁ ?" ଅଶ୍ରୁରେ ତା କଣ୍ଠ ରୁଦ୍ଧ ହୋଇଗଲା । ଶଙ୍କରୀ ବକାଙ୍କ ଭଳି ଟାଟକା ହୋଇ ଖଟ ବାଡ଼ ଧରି ଠିଆ ହେଲା । ସମସ୍ତଙ୍କ ହାତ ଥରୁଛି । କାହାରି ବୁଦ୍ଧିବଳ କିଛି ନାହିଁ । ଘରେ କିଏ ବା କଣ ଜାଣେ ? ଅନେକ ପ୍ରକାର ଚିନ୍ତା ବନ୍ଧା ଚାଲିଲା—ଚିକିତ୍ସକ ବାସୁଦେବ କବି ଆସି ରୋଗୀକୁ ପରୀକ୍ଷା କରି ବସିଲେ । କଣ ହୋଇଛି,

କୁଣ ହୋଇଛନ୍ତି କହି ସମସ୍ତେ ତାଙ୍କୁ ବ୍ୟସ୍ତ କରି ପକାଇଲେ । ଅନେକ କ୍ଷଣ ପରୀକ୍ଷା କଲେ—ମୂର୍ଚ୍ଛା ଭାଙ୍ଗିବା ପାଇଁ ଅନେକ ଔଷଧ ଦେଲା ପରେ ଅମୂଲ୍ୟ ଆଖି ମେଲାଇଲା । ସମସ୍ତଙ୍କର ଟିକିଏ ଆଶା ହେଲା, ଶଙ୍କରୀ ଗଳାର ସୁନାମାଳ କାଢ଼ି ଚିକିତ୍ସକଙ୍କ ହାତରେ ଦେଲା । ତା ଆଖି ଫାଟି ଲୁହ ଝରଝର ବୋହୁ-ଥିଲା । ସାବତ ମାର ଏତେ ପ୍ରେମ ଦେଖି ବାସୁଦେବ ସ୍ତମ୍ଭିତ ହୋଇଗଲେ । କିଛିକ୍ଷଣ ପୂର୍ବେ ତାଙ୍କ ମନରେ ନାନା ପାପ ସନ୍ଦେହ ପ୍ରବେଶ କରିଥିଲା, ମାତ୍ର ଏ ବ୍ୟବହାରରେ ତାହା ଦୂର ହୋଇଗଲା । କିନ୍ତୁ ପରକ୍ଷଣରେ ସମସ୍ତ ଅନ୍ଧକାର । ନବୀନ ସୂର୍ଯ୍ୟୋଦୟରେ ମଧୁରକାନ୍ତ ପ୍ରକୃତି ନବବେଶ ଧାରଣ କରି ହସିବାକୁ ଲାଗିଲା । ପିଞ୍ଜରାର ଶୁଆ ସାରୀ ଡାକି ଉଠିଲେ । ଦୁଆର ବନ୍ଧ ଉପରେ ଝରକା ବାଡ଼ ଉପରେ ଖରାର ପହିଲି ରେଖା ଦିଶିଲା । ଚାରିଆଡ଼ ଜୀବନରେ ପୂରି ଉଠିଲା—ମାତ୍ର ଜମିଦାର ଉଆସରେ ମହାମୃତ୍ୟୁର ଗଭୀର ଛାୟା ଘୋଟିଗଲା । ସୀତାର ଆଖି ଅନ୍ଧ କରି ଅମୂଲ୍ୟ ଆଖି ବୁଜିଲା—ମୁହୂର୍ତ୍ତକେ ମହା-ପ୍ରଳୟ ଘଟିଗଲା । ପୁତ୍ର ଶବ ଉପରେ ପଡ଼ି ମାତାର ଚେତା ବୁଡ଼ିଗଲା । ଦାସଦାସୀ ଚିତ୍କାର କରି କାନ୍ଦି ଉଠିଲେ । ମାତ୍ର କାନ୍ଦିଲା ନାହିଁ ଜଣେ—ସେ ଜଣକ ଶଙ୍କରୀ । ସ୍ୱହସ୍ତରେ ଯାହାର ପ୍ରାଣ ସେ ବଧ କରିଛି ତା ପାଇଁ ସେ କିମିତି କାନ୍ଦିବ ? ନିଜ ଦୁର୍ବୁଦ୍ଧିରେ ଯେ ଶ୍ୱଶୁରକୁଳ ବୁଡ଼େଇଛି, ସ୍ୱାମୀ ଶ୍ୱଶୁରଙ୍କୁ ପିଣ୍ଡରୁ ବଞ୍ଚିତ କରିଛି, ସେ କଣ ବୋଲି କାନ୍ଦିବ ? ଅମୂଲ୍ୟର ମୃତ ମୁହଁକୁ ଚାହିଁ ତା ଛାତିଭିତରେ ରକ୍ତ ବରଫ ପରି ଜମିଗଲା । ସେ ବାଘୁଣୀ ପରି ସେଠୁଁ ଉଠି ଚାଲିଗଲା । ତାହାର ଆଖି ଆଗରେ ସେତେବେଳେ ଜଗତ୍ ଭୀଷଣ ଅନ୍ଧକାରମୟ ।

ଆପଣା ଘର କବାଟ କିଳି ଶଙ୍କରୀ ବିଛଣା ଉପରେ ବସିଲା । ତାହାର ରାକ୍ଷସୀ କ୍ଷୁଧା ତୃପ୍ତ ହୋଇଛି । ପେଟଭିତରୁ ପ୍ରତିହିଂସାର ନିଆଁ ନିଭିଛି । ସେ ଉଦାସ ଶୂନ୍ୟ ଦୃଷ୍ଟିରେ କାନ୍ଥ ବାଡ଼ ଚାରିଆଡ଼କୁ ଚାହିଁଲା । କଣ ବୋଲି ସେ କଣ କଲା ? କାହିଁକି ସେ ସ୍ତ୍ରୀ କଲା ? କିପାଁ ଜେମା ଉସୁକାର କଥାରେ ପଡ଼ିଲା; କିନ୍ତୁ ଆଉ ଭାବିଲେ କଣ ହେବ, ଏହାର ପ୍ରାୟଶ୍ଚିତ୍ତ ସେ କରିବ, ନିଶ୍ଚୟ କରିବ । ଯେଉଁ ହାତରେ ଅମୂଲ୍ୟର ପ୍ରାଣ ନେଇଛି, ସେହି ହାତରେ ନିଜର ପ୍ରାଣ ନେବ । ଆଉ ଏ କଳାମୁହଁ ସେ ଜଗତରେ କାହାକୁ ଦେଖାଇବ ନାହିଁ । ଗୋଟାଏ ବିକଟ ଖପ୍ପିରେ ତାର ଆଖି ଯୋଡ଼ିକ ଜଳି ଉଠିଲା । ସେ ମରିବାର ବାଟ ସ୍ଥିର କରିବାକୁ ଲାଗିଲା । ବାରିଆଡ଼ କୂଅମୂଳେ କନିଅର ଗଛଟିଏ ଫୁଲ ଫଳରେ ନଇଁ ପଡ଼ିଥିଲା । ସେ ତୁନ ତୁନ କୂଅମୂଳକୁ ଗଲା । କେତୋଟି ସରସ ଫଳ ଛିଣ୍ଡାଇ ଆଣିଲା । ଘରେ ପଶି ଭିତରୁ କବାଟ କିଳିଦେଲା । ତାକୁ ପାଟିରେ ଯାକି ଶୋଇଲା । କ୍ରମେ ହାତ ଗୋଡ଼ ଥଣ୍ଡା ହୋଇ ଆସିଲା—ଚେତା ବୁଡ଼ିଲା ।

ଦିନ ଏଗାରଟାକୁ ପୋଲିସ ଇନ୍‌ସପେକ୍ଟର ବାବୁ ଶିବଚରଣ ଦାସ ଦଳବଳ ସହ ଆସି ତା ଦୁଆରେ କବାଟ ଡାକ ହାକ କଲେ, କେହି ଜବାବ ନ ଦେବାରୁ ଶେଷକୁ କବାଟ ଭାଙ୍ଗିଲେ । ଭିତରେ ପଶି ସମସ୍ତଙ୍କର ଚକ୍ଷୁ ସ୍ଥିର—ଖଟ ଉପରେ ଶୋଇଛି ଶଙ୍କରୀ; କିନ୍ତୁ ଦେହ ହାତ କୁଆପଥର ପରି—ପ୍ରାଣହୀନ ପାଟିଭିତରେ କନଅର ଫଳ ! ମୋକଦ୍ଦମା ସରକାରକୁ ଗଲା ।

ଶଙ୍କରୀ ଓ ଅମୂଲ୍ୟ ଏକାଦିନରେ ଚିତାରେ ଭସ୍ମୀଭୂତ ହେଲେ । ସୀତା ଶୋକରେ, ଦୁଃଖରେ ମୃତପ୍ରାୟ ହୋଇ ବାପ ଘରକୁ ମାଡ ହେଲା । ବହୁଦିନ ସେ ମଲାଗଲା ବେଗମ ପଡ଼ିଲା । ବେଶିପରେ ଭଲ ହୋଇ ଶୁଣିଲା—"ମୋକଦ୍ଦମାର ବିଚାରରେ ଜେମା ଓ ଉଚ୍ଛବାର କଳାପାଣି ହୋଇଛି, ଆଉ ଯୋଗୀ ନରଘାତକ ପ୍ରମାଣିତ ହୋଇ ଫାଶୀକାଠରେ ଝୁଲୁଛି ।

ଦିବାକରର କୁଳ ବୁଡ଼ିଲା । ଲକ୍ଷ୍ମଣ ମିଶ୍ରର ପିଲାମାନେ ଆସି ପୈତୃକ ସମ୍ପତ୍ତି ଅଧିକାର କରି ବସିଲେ । ଯେ ଯେତେ ବୁଝାଇଲେ ସୀତା ଆଉ ପୋଷ-ପୁଅ ନେଲା ନାହିଁ । ତାର ତ ଅମୂଲ୍ୟ ଯାଇଛି, ପୋଷାପୁଅ—ଗୁଣ୍ଡାରୁଅ, ସେ କଣ ତା ହୃଦୟର କ୍ଷତ ସ୍ଥାନ ଶୁଷ୍କ କରିବ ?



# ଚତୁସ୍ତ୍ରିଂଶ ଅଧ୍ୟାୟ ।



ବସ୍ତୃତ ତାଳବନ ଉପରେ ଅପରାହ୍ଣ ସୂର୍ଯ୍ୟର ମଳିନ ରଶ୍ମି ନୃତ୍ୟ କରୁଥିଲା । ପବନ୍ଧାନ ଖୁଣ୍ଟା ଉପରେ ବସିଥିଲା ଗୋଟିଏ ନୀଳବର୍ଣ୍ଣର ଭଦଭଦଳିଆ, ଗ୍ରାମ୍ୟପଥ ଦେଇ ଶଗଡ଼ ଅଡ଼ାଇ ଯାଉଥିଲେ ବର୍ମୀ କୃଷକବୃନ୍ଦ । ମୁଣ୍ଡରେ ସୁଉଳ ଟୋକାଇ, ଦେହରେ ରେଶମୀ ପୋଷାକ, ପାଦରେ ମଖମଲ ଯୋତା, କାନରେ ହୀରା କର୍ଣ୍ଣଫୁଲ ଭୂଷିତ ହୋଇ ବର୍ମୀ ଯୁବତୀବୃନ୍ଦ ଲେସ୍ ବୁଣୁ ବୁଣୁ ଯାଉଥିଲେ ହାଟକୁ । ଦଳେ ଦଳେ ପିଲା ବାଟରେ ମାର୍ବୁଲ ଗୋଲି ଖେଳୁଥିଲେ । ତାଙ୍କୁ ଗୁହିଁ ଗୁହିଁ ପଡ଼ିଆରେ ଚରୁଥିଲେ କେତୋଟି ମେଣ୍ଢା । କାଠ ଘରର ବସ୍ତୃତ ବରଣ୍ଡାରେ ପାଦଗୁରଣା କରୁଛି ରଘୁନାଥ । ସମ୍ମୁଖର ମୁକ୍ତ ପଡ଼ିଆରେ ହ୍ୟାଣ୍ଡବଲ୍ ଖେଳ ଖେଳୁଛନ୍ତି ପିଲାଏ ତାଙ୍କୁ ଗୁହିଁ ତାହାର ପ୍ରାଣରେ ବିଷାଦର ଗଭୀର ଦୀର୍ଘନିଃଶ୍ୱାସ ଉଠୁଛି । ପିଲାଙ୍କର ମା ନାହିଁ । ଦିନେ ହସି ହସି ମାୟା ଯାହା କହୁଥିଲା, ତାହାହିଁ ଘଟିଛି । ସ୍ୱାମୀ ଓ ସୁନ୍ଦର ପିଲାଙ୍କୁ ଅକୂଳ ସମୁଦ୍ରରେ ଭସାଇ ସେ ପରଲୋକ ଯାତ୍ରା କରିଛି । ରେଙ୍ଗୁନରେ ଭୀଷଣ ପ୍ଲେଗ ଲାଗିଥିଲା, ହଠାତ୍ ଦିନକ ଜ୍ୱରରେ ତାହାର ମୃତ୍ୟୁ ହେଲା । ରଘୁନାଥ ପିଲାଙ୍କୁ ଘେନି ପେଗୁ ପଳାଇ ଆସିଲା । ବର୍ଷେ ହେଲା ସେ ପେଗୁରେ । ସଂସାରରୁ ତା ମନ ଛାଡ଼ି ଯାଇଛି । ମାୟା ପର ସ୍ତ୍ରୀରତ୍ନ ଯେ ହରାଇଛି, ତା ପର ହତଭାଗ୍ୟ କିଏ ଅଛି ? ତଥାପି ରଘୁନାଥର ଦିନ କଟି ଚାଲି ଯାଉଛି । ଏଥି ମଧ୍ୟରେ ସେ ସୀତା ଘରର ଖବର କିଛି ପାଇ ନ ଥିଲା । ଆଜି ଡାକରେ ଜଗନ୍ନାଥଙ୍କର ଖଣ୍ଡେ ଚିଠି ଆସିଛି; ତାହା ପଢିଲାବେଳୁ ତାହାର ଭାବାନ୍ତର ଘଟିଛି ।

ଜଗନ୍ନାଥ ଲେଖିଛନ୍ତି ଭୀଷଣ ସମ୍ବାଦ—'ସୀତାର ଏକମାତ୍ର ପୁତ୍ର ଅମୂଲ୍ୟ ଆଉ ଇହଜଗତରେ ନାହିଁ ।' ସୀତା ବର୍ତ୍ତମାନ ବାଟ-ଭାଇର ଦ୍ୱାର ଆଶ୍ରୟରେ । ଆଉ ସବୁଠାରୁ ଦୁଃଖର ବିଷୟ ଭାଇ ଭାଉଜର ତା ପ୍ରତି ଅତ୍ୟାଗୁର । ରଘୁନାଥ ଗୁରପୃଷ୍ଠାବ୍ୟାପୀ ସେ କରୁଣ ପତ୍ର ପାଠ କଲା ।

ତା ପ୍ରାଣରେ ବଡ଼ ବ୍ୟଥା ହେଲା, କିନ୍ତୁ ସଙ୍ଗେ ସଙ୍ଗେ ଅସମ୍ଭବ ଅଦ୍ଭୁତ ଅଦ୍ଭୁତ କଳ୍ପନାଗୁଡ଼ାଏ ତାହାର ଚିତ୍ତ ଅଧିକାର କଲେ । ସେ କାଠ ରେଲିଂ ବନ୍ଧରେ ଆଉଜି ପଡ଼ି ଦୂରାକାଶକୁ ଗୁହିଁଲା । ବାସ୍ତବରେ ତା କଳ୍ପନା ଯଦି ସଫଳ ହୁଅନ୍ତା—କଣ ହୁଅନ୍ତା ? ଜଗତରେ ଅସମ୍ଭବ କଣ ? ଏ ଅବା କି ଗୁରୁତର କଥା । ସେ ବନ୍ଧୁଦିନର ପୁରୁଣା କଥା ସବୁ ମନେ ପକାଇଲା । ସେତେ-

ବେଳେ ସେ ବାଳକ, ସୀତା ବାଳିକା । ପରସ୍ପରକୁ ଦେଖିବାପାଇଁ ଉଭୟଙ୍କର କି ଆକୁଳ ଆକାଂକ୍ଷା । କୋଠା ଛାତ ଉପରୁ ସୀତା ତା ବାଟକୁ ଚାହିଁଥାଏ, ବାରଆଡ଼େ କୁଅ ମୂଳେ ସୀତା ଲୁଚି ଲୁଚି ଯାଇ ତା ହାତରେ ଟଙ୍କା ପଇସା ଦେଇ ଆସେ । ସେଦିନେ ସେ କାନ୍ଦିଥିଲା । ସୀତା ପଣତ କାନରେ ତା ଲୁହ ପୋଛିଥିଲା । ଆଉ ସେ ଦିନ, ସେ ବନ୍ଧୁଦିନ ତଳେ ରାଣୀହାଟ ବଜାରକୁ ଯାଇ ତା ଲାଗି ଶିଙ୍ଗ ପାନିଆ, ଶିଙ୍ଗ ଫରୁଆ କିଣି ଆଣିଥିଲା, ପୁଣି ଯୌବନର ସେ ମଧୁର ସ୍ମୃତି, ଲୁଚି ଲୁଚି ଆଖିରେ ଆଖିରେ କେତେ କଥା ଭାଷା ସେମାନେ ହୋଇଥିଲେ, ଆଉ ସେ ଶେଷ ରାତି । ସେ ଶେଷ ରାତି କଥା କି ରଘୁନାଥ ଜୀବନରେ ଭୁଲି ପାରିବ ? ଆଜି ମଧ୍ୟ ତା କଟିରେ ସେ ସୁନା ସୂତା ଅଛି । ସ୍ମୃତିର ସଙ୍କୋଳପରି ଆଜି ମଧ୍ୟ ସୂତାଟିକୁ ସେ ବେଳେ ବେଳେ ଦେଖୁଥାଏ । ଏଇ ସୂତା କେସରକ ଭିତରେ ତା ଜୀବନର ଇତିହାସ ଗୁପ୍ତ ରହିଛି, ଏହି ସୂତାଟି ତାକୁ ଦେଶାନ୍ତରୀ କରିଛି, ଜାତି ହରାଇଛି, ଦୂର ବର୍ମା ମୁଲକରେ ଆଣି ପକାଇଛି । ଏହି ସୂତା କେରାକ ଅବଲମ୍ବନରେ ସେ ପ୍ରେମମୟୀ ମାୟାକୁ ପାଇଛି, ଆଉ ତାର ମଧୁମୟ ପ୍ରେମତରୁର ଏ ଦୁଇଟି ଅପୂର୍ବ କୁସୁମ । ରଘୁନାଥ ବହୁକ୍ଷଣ ମାୟାକୁ ମନେ ପକାଇ ଅତି କାତର ହୋଇ କାନ୍ଦିଲା । ତା ଜୀବନରେ ସେ ଯୋଡ଼ିଏ ସ୍ତ୍ରୀକୁ ଭଲ ପାଇଛି, ଯୋଡ଼ିକ ତା ଦୃଷ୍ଟିରେ ସମାନ—ଯୋଡ଼ିକ ତା ପ୍ରାଣର ଅମୂଲ୍ୟନିଧି । ମନ୍ଦ କର୍ମ-ଫଳରୁ ସେ ଦୁଇଟିଙ୍କୁ ହରାଇଛି । ତଥାପି ପ୍ରେମ ତ ତାର ମଳିନ ହୋଇ ନାହିଁ । ଯୋଡ଼ିଏ ତାର ହୃଦୟର ଶ୍ରେଷ୍ଠତମ ଆସନରେ ଆସୀନ, ତାର ଜୀବନ-ବଂଶୀର ବିଷାଦ ଆନନ୍ଦର ଦୁଇଟି ସ୍ୱର, ତାର ପ୍ରେମମୟ ହୃଦୟରେ ଗଙ୍ଗା ଯମୁନାର ଯୋଡ଼ିଏ ଧାରା । କେଉଁଠି କାହାର ଆରମ୍ଭ, କାହାର ଶେଷ, ସେ ସ୍ଥିର କରି ପାରି ନାହିଁ । ସୀତାକୁ ଛାଡ଼ି ସେ ସୀତାକୁ ଭୁଲି ନାହିଁ । ମାୟାର ମୃତ୍ୟୁରେ ସେ ତାକୁ ଅନ୍ତରରୁ ଅନ୍ତର କରି ନାହିଁ । ଦୁଇଟି ତାର ଦୁଇ ଅଙ୍ଗ । ରଘୁନାଥ ଆଶ୍ଚର୍ଯ୍ୟ ହୋଇ ଭାବିଲା, ଅଦ୍ୟାପି ସୀତାକୁ ସେ ଭୁଲି ନାହିଁ କାହିଁକି ?

କଣ ଭଗବାନଙ୍କର ଏହି ଇଚ୍ଛା ଥିଲା ? ଏତେ ଦୁଃଖ, ଏତେ ବିଚ୍ଛେଦ, ଏତେ ଶୋକ, ଏତେ ମୃତ୍ୟୁ ପରେ ଉଭୟର ମିଳନ ଭଗବାନଙ୍କର ଅଭିପ୍ରେତ ? ରଘୁନାଥ ଭବିଷ୍ୟତର ଉଜ୍ଜ୍ୱଳ ଚିତ୍ର ଆଖି ଆଗରେ ଦେଖି ପାରିଲା । ଏଥର ସୀତାର ଦୁଃଖ ଅବସାନ ହେବ—ଏଥର ସେ ସୁଖୀ ହେବ । ଯେ ତାହାର ବିଚ୍ଛେଦରେ ଅହୋରାତ୍ର ତା ଛବି ଖଣ୍ଡିକ ପୂଜା କରିଛି । ସେ କଣ ଚିତେଇ ନାମଟାକୁ ଶୁଣି ନାହିଁ ସବୁ, ସେ କଣ ଜାଣି ନାହିଁ ସୀତାର ହୃଦୟ ? ଏବେ ମଧ୍ୟ ସୀତା ଓ ତାର ମିଳନ ହୋଇ ପାରେ, ପୃଥିବୀରେ ଅସମ୍ଭବ କଣ ? ଅଦ୍ଭୁତ କଣ ? ଏଥର ସେ ସୀତାକୁ ସୁଖୀ କରିବ, ତାକୁ ଅଙ୍କଲକ୍ଷ୍ମୀ କରିବ, ମାତୃସ୍ଥାନ

ପିଲାମାନେ ପୁଣି ନୂଆ ମା ପାଇବେ । କନ୍ୟାକୁତ ପିତା ପୁଣି ଝିଅଟିଏ ପାଇବେ,
ଆଉ ସ୍ୱର୍ଗରେ ଥାଇ ଆଶୀର୍ବାଦ କରିବେ ତାକୁ ସରସ୍ୱତୀ—ସେଇ ସରସ୍ୱତୀ—
ମାତୃହୃଦୟା, ଦୟାମୟୀ, ସ୍ୱାନ ଅନାଥର ଜନନୀ—ସେ ଯେ ତାଙ୍କର ଋଣ ପରି-
ଶୋଧ କରି ପାରି ନାହିଁ, ତାଙ୍କର ଅମୂଲ୍ୟ ସ୍ନେହର ପ୍ରତିଦାନ ଦେଇ ପାରି ନାହିଁ ।

କଳ୍ପନାର ଆନନ୍ଦରେ ତାହାର ହୃଦୟ ପୂରି ଉଠିଲା । ଏଥରେ ସେ
ଦମ୍ପତ୍ତିଙ୍କୁ ସୁଖୀ କରିବ । ବୃଦ୍ଧ ଜଗନ୍ନାଥ ଓ ଠାକୁରାଣୀଙ୍କୁ ସମାଜ ଦାଉରୁ ରକ୍ଷା
କରିବ, ଆଉ ସ୍ନେହମୟୀ ପିଉସୀ ନାନୀ ତାହାର ଆଶ୍ରୟରେ କାଳ କାଟିବ ।
ପୁଣି ମନରେ ହେଲା ସତେ କ'ଣ ହେବ ? ସତେ ସୀତା ତାକୁ ବିଭା ହେବାକୁ ସମ୍ମତ
ହେବ । ହୃଦୟ କହିଲା କାହିଁ ନ ହେବ ? ଚିର ନିର୍ଯ୍ୟାତିତା ଅବଳା ସେ କାହିଁ
ଆଉ କାହା ଲାଗି ରଘୁନାଥକୁ ତ୍ୟାଗ କରିବ ? ଯେଉଁମାନେ ଉଭୟର ମିଳନର
ପରିପନ୍ଥୀ, ସେମାନେ ଆଉ ଇହଜଗତରେ ନାହାନ୍ତି । ତେବେ କାହିଁକି ସେ
ତାହାର ବାଲ୍ୟସଖାକୁ ତ୍ୟାଗ କରିବ ? ଅବଶ୍ୟ ଜନ୍ମଗତ, ସମାଜଗତ କୁସଂସ୍କାର
ସୀତାର ଥିବ, ତଥାପି ସେ ତାକୁ ପରାମର୍ଶ ଦେବ, ଶିକ୍ଷା ଦେବ, ସାମାନ୍ୟ ନାରୀ
କ'ଣ ତା' କଥାରେ ଭୁଲିବ ନାହିଁ? ବିଶେଷତଃ ତାହାର ପରମ ପ୍ରେମିକ କଥାରେ ?
ଆଶାର ଆତିଶଯ୍ୟରେ ରଘୁନାଥକୁ ସମୁଦାୟ ଅତି ସହଜ ବୋଧ ହେଲା, ସେ ପକ୍ଷୀ
ହୋଇଥିଲେ କେଜାଣି ସେହିକ୍ଷଣି ଉଡ଼ି ଚାଲି ଯାଇଥାନ୍ତା; ମାତ୍ର ଦାରୁଣ କର୍ତ୍ତବ୍ୟ
ତାହା କରି ଦେଲା ନାହିଁ । ସବୁ କାମ ଅନ୍ୟକୁ ଶିଖାଇ ଶିଖାଇ ତାକୁ ଆହୁରି
ଛଅ ମାସ ଲାଗିଗଲା । ଗଭୀର ବିଶ୍ୱାସ ଓ ପରମାନନ୍ଦମୟ ଆଶାର କୁହୁକରେ ସେ
ଦିନ ଗଣିଲା । ଯେଉଁ ଦିନ କଲିକତା ଭୂଇଁରେ ସେ ପାଦ ଦେଲା, ସେଦିନ ସ୍ୱର୍ଗର
ଏକ ଅପୂର୍ବ ଉଲ୍ଲାସ ତାହାର ସର୍ବାଙ୍ଗ ଅଧିକାର କରି ପକାଇଲା ।

ହଞ୍ଜବେଣୀ ଲଗାଇ ଫୁଲ ସେତେବେଳେ ସନ୍ଧ୍ୟାପରିଚ୍ଛଦ ପିନ୍ଧୁଥିଲା ।
ବେହେରାଣୀ ଆସି ସମ୍ବାଦ ଦେଲା ମିଷ୍ଟର ମହାପାତ୍ର ଆସିଛନ୍ତି । ସ୍ୱାମୀ ସ୍ତ୍ରୀ
ଉଭୟେ ପୁରୁଣା ବନ୍ଧୁଙ୍କୁ ପାଛୋଟି ଘର ଭିତରକୁ ଆଣିଲେ । ଡାକ୍ତର ବାବୁ ଓ
ତାଙ୍କ ସ୍ତ୍ରୀ ଆଜି କାଲି ବଡ଼ କାର୍ଯ୍ୟରେ ବ୍ୟସ୍ତ । ଜ୍ୟୋତିଷ ଡାକ୍ତରଙ୍କର ଦତ୍ତ
ସମ୍ପତ୍ତିରେ କଲ୍ୟାଣୀଭବନ ପ୍ରତିଷ୍ଠିତ ହୋଇଅଛି । ସେଠି ଶତାଧିକ ବିଧବା ଓ କୁଳ-
ତ୍ୟାଗିନୀ ଅନାଥା ଆଶ୍ରୟ ଲାଭ କରିଛନ୍ତି । ଫୁଲ ଓ ତାରକ ବାବୁ ସେମାନଙ୍କର
ମା ବାପ ହୋଇଛନ୍ତି । ଦୁଇଘଣ୍ଟା କାଳ ବୁଲି ବୁଲି ରଘୁନାଥ ସବୁ ଦେଖିଲା ।
ବିସ୍ମୟରେ ତାହାର ହୃଦୟ ପୂର୍ଣ୍ଣ ହୋଇଗଲା । ସେ ଚା ଖାଇ ଖାଇ କାଢ଼ିଲା
ଆପଣା କଥା । ଭାଇର ପୁଅ ମରି ଯାଇଛି ବୋଲି ଫୁଲର ବଡ଼ ଦୁଃଖ ହେଲା ।
କିନ୍ତୁ ପରକ୍ଷଣରେ ସେ ଶୁଣିଲା ରଘୁନାଥର ଅପୂର୍ବ ଇତିହାସ । ସ୍ୱାମୀ ସ୍ତ୍ରୀ
ନିବିଷ୍ଟଚିତ୍ତରେ ଶୁଣିଲେ । ସୀତାକୁ ବିବାହ କରିବାକୁ ରଘୁନାଥ ଇଚ୍ଛୁକ,

ଏହା ଶୁଣି ଅତ୍ୟନ୍ତ ସୁଖୀ ହେଲେ । ଆପଣା କାର୍ଯ୍ୟର ସମର୍ଥକ ପାଇଲେ କିଏ ବା ଆନନ୍ଦିତ ନ ହେବ ? ସ୍ଥିର ହେଲା ସେ ସ୍ଥାନରେ ସୀତା ଆସି ରହିବ ।

ରଘୁନାଥଙ୍କୁ କଣ୍ଟକ ବିଦାୟ ଦେଇ ଫୁଲ ବୋହୂର ଆଗମନ ତାଙ୍କୁ ସୁହାଁ ନହିଲା । ବିଧବାବିବାହ ତା ଦୃଷ୍ଟିରେ ଦୋଷାବହ ନୁହେ । ସେ ନିଜେ ବୈଧବ୍ୟଯନ୍ତ୍ରଣା ଭୋଗ କରିଛି । ଆପଣାର ଅତୀତ ଜୀବନ ସ୍ମରଣ କରି ତା ମନ ସୀତା ପ୍ରତି ସହାନୁଭୂତିରେ ପୂର୍ଣ୍ଣ ହୋଇ ଉଠିଲା । ତାହାର ଧ୍ରୁବ ଧାରଣା ହେଲା, ସୀତା ନିଶ୍ଚୟ ରଘୁନାଥଙ୍କୁ ଏଥର ବିବାହ କରିବ । ହାତ କତିରେ ଅମୂଲ୍ୟ ପଦାର୍ଥ ପାଇ କିଏ ବା ତ୍ୟାଗ କରେ ?

ମିଷ୍ଟର ସେନ ଆସି ତା ପଛ ଆଡ଼େ ଛିଡ଼ା ହେଲେ । ତାକୁ ଚିନ୍ତାନ୍ୱିତ ଦେଖି କହିଲେ—"କଣ ଚିନ୍ତା କରୁଛ ଭାୟୋଲା ?"

ଭାୟୋଲା କହିଲା—"ମୁଁ ସୀତା କଥା ଭାବୁଛି । ସତେ କଣ ସେ ରଘୁନାଥ ବାବୁଙ୍କୁ ବିଭା ହେବ ତମର ବିଶ୍ୱାସ ?

ତାରକ ବାବୁ ଆକାଶକୁ ଅନାଇଁ କହିଲେ—"କେମିତି କହିବି କହିଲ ?" ଫୁଲ କହିଲା—"ଯଦି ବିଭା ହୁଏ କ୍ଷତି କଣ ? ମୁଁ ମୋ କଥା ଭାବୁଛି ।"

ଏହା ପରେ ମନର କୋହ ମନରେ ମାରି ଗଭୀର ପ୍ରେମରେ ସ୍ୱାମୀ ମୁହଁକୁ ଚାହିଁ କହିଲା—'କିନ୍ତୁ ତମେ ମହାତ୍ମା ବୋଲି ସିନା ମତେ ଉଦ୍ଧାର କରିଛ ?'

ତାରକ ବାବୁ ଧୀରକଣ୍ଠରେ କହିଲେ—"ଭାୟୋଲେ ! ଯୀଶୁ ତମକୁ ଉଦ୍ଧାର କରିଛନ୍ତି । ସେ ତମ ପାଇଁ ଆପଣାର ରକ୍ତ ଢାଳିଦେଇଛନ୍ତି ।"

"ହଁ, ମୋର ପାପ ସିନ୍ଦୂର ବର୍ଣ୍ଣ ହେଲେହେଁ ସେ ମେଷଲୋମତୁଲ୍ୟ ଶୁକ୍ଳ କରିଛନ୍ତି । ତାଙ୍କ କତିକି ଆସି ମୁଁ ଜୀବନ ପାଇଛି । ପ୍ରିୟତମ ! କିପରି କହିବି ସେ ପ୍ରଭୁ ମୋର କିପରି ପ୍ରାଣାଧିକ ପ୍ରିୟ ।"

ତାରକ ବାବୁ ପତ୍ନୀର ଧର୍ମଭାବରେ ମୋହିତ ହୋଇ କହିଲେ "ଭାୟୋଲା ! ତମେ ପ୍ରକୃତ ଖ୍ରୀଷ୍ଟିୟାନ, ଅନ୍ଧକାରରୁ ପ୍ରଭୁ ତମକୁ ଜ୍ୟୋତିକି ଆଣିଛନ୍ତି ।"

"ସେହି ଯୋଗୁଁ ଏ ହାତ ତାଙ୍କର କାର୍ଯ୍ୟ କରିବ, ଏ ଗୋଡ଼ ତାଙ୍କର ପାଇଁ ଚାଲିବ, ଏ ଜିହ୍ୱା ତାଙ୍କର ଗୁଣଗାନ କରିବ ।" ଭାୟୋଲା ପ୍ରାର୍ଥନାର ବେଳ ହେଲାଣି ଦେଖି ଧର୍ମ ପୁସ୍ତକ, ଗୀତ ପୁସ୍ତକ ଆଣି ମଝି ଘରେ ଥୋଇଲା । ସ୍ତ୍ରୀ ବାଳିକା

ସମସ୍ତେ ଗୋଟି ଗୋଟି ହୋଇ ଆସି ଆଣ୍ଠୁମାଡ଼ି ଭକ୍ତିଭାବରେ ଉପବେଶନ କଲେ। ଫୁଲ ସେମାନଙ୍କ କୋଳରେ ଝିଅ ବୋହିଟିଙ୍କୁ ନେଇ ବସିଲା। ଡାକ୍ତର ବାବୁ ଉପାସନା କଲେ, ବାଇବେଲ ଗ୍ରନ୍ଥରୁ ପାଠ କଲେ,—"ଯେମନ୍ତ କଦାପି ଆମ୍ଭମାନଙ୍କ ମଧ୍ୟରୁ କୌଣସି ଲୋକ ଆଜ ଆପଣା ନିମନ୍ତେ ନ ବଞ୍ଚୁ ଅବା ଆପଣା ପାଇଁ ନ ମରୁ, ମାତ୍ର ଆମ୍ଭମାନଙ୍କର ବଞ୍ଚିବାର ଓ ମରିବାର କେବଳ ପ୍ରଭୁଙ୍କ ନିମିତ୍ତ ହେଉ।" ସମସ୍ତେ ଭକ୍ତିଭାବରେ ତଥାସ୍ତୁ କହିଲେ। ଫୁଲମଞ୍ଜରୀର ଆଖିରୁ ଭକ୍ତିର ଅଶ୍ରୁଧାରା ବହିବାକୁ ଲାଗିଲା।

ରଘୁନାଥ କଟକକୁ ଆସି ଜଗନ୍ନାଥଙ୍କ ଘରେ ଉପସ୍ଥିତ ହେଲା। ହଠାତ୍ ଚିଠିପତ୍ର ନ ଦେଇ ଆସି ଥିବାରୁ ସେମାନେ ବଡ଼ ଆଶ୍ଚର୍ଯ୍ୟ ହେଲେ। ରଘୁନାଥ ଯେ ବାତ୍ୟା, ଏ କଥା ତାରାମଣି ଜାଣନ୍ତି। ସେ ବାହାନୀକି ପୁଅକୁ ସାନ୍ତ୍ୱନା ଦେଇ ବସିଲେ। ଜଗନ୍ନାଥ ଜାତିରୁ ଅନେକ ହୋଇଛନ୍ତି। ଘରେ ବାଉରାଣୀକି ସ୍ଥାନ ଦେଇ, ପୁଣି ସମାଜଚ୍ୟୁତ ରଘୁନାଥ ଓ ତାହାର ପରିବାରକୁ ଛଅମାସ କାଳ ରଖିଛନ୍ତି, ଏପରି ଅବସ୍ଥାରେ ଜାତି ବିଶେଷତଃ ବ୍ରାହ୍ମଣ ଜାତି କି ତାଙ୍କୁ କ୍ଷମା କରି ପାରେ? କିନ୍ତୁ ସେଥିରେ ତାଙ୍କର ଭ୍ରୂକ୍ଷେପ ନାହିଁ। ବୁଧୀ ମୁହଁକୁ ଚାହିଁ ସେ ରଘୁକୁ ଉଦ୍ଦେଶ୍ୟ କରି କହିଲେ—"ବାପ! ଏହି ଯୁବତୀ କନ୍ୟାକୁ—ମୋର ସ୍ୱହସ୍ତପାଳିତା ଅନାଥା ବାଳିକାକୁ ମୁଁ କେଉଁଠି ଛାଡ଼ିବି କହିଲୁ? ବାଉରାଣୀ ହେଲେ କଣ ସେ ମନୁଷ୍ୟ ନୋହେ? ସେ ଭାରି ବୁଦ୍ଧିମତୀ! ମୁଁ ତାକୁ ଅନେକ ପାଠ ପଢ଼ାଇଛି।" ଏହା କହି ସସ୍ନେହବଚନରେ ବୁଧୀକୁ କତିକୁ ଡାକିଲେ। ବୁଧୀ ଲାଜ ଲାଜ ହୋଇ ଅଜା ଓ ମାମୁଁ କତିରେ ଯାଇ ବସିଲା। ଜଗନ୍ନାଥ କହିଲେ—"କୋଇଲି ଚଉତିଶା ଗାଇଲୁ?" ବୁଧୀ ପ୍ରଥମେ ଲାଜରେ ମଳିପରି ହୋଇଗଲା, ପରେ ଭକ୍ତି ମଧୁର କଣ୍ଠରେ ଗାଇଲା—

"ଦେବତାକୁ ଦେଖି ଯାଇଁ, ଦଉଁ ଅଛୁ ଯେଉଁଠାଇଁ,
ଦୃଷ୍ଟି ଦେଲେ ନାହିଁ ଦୂରେ, ଦଉଁ ରହିଅଛୁ ଆପଣା ଘରେ ଲୋ—
ଦୀପକୁ ଜାଳି ଦଉଁକୁ ଦେଖି
ଦଉଁ ରହିଅଛୁ ଦେଉଳ ଶିଖି।"

ତାହାର ମନୋହର ସ୍ୱର ଶୁଣି ରଘୁନାଥ ତନ୍ମୟ ହୋଇଗଲା। କହିଲା—"ବାପା! ଆଉ ଏ ଜାତିର ଲାଞ୍ଛନା ଭୋଗିବାକୁ ହେବ ନାହିଁ। ମୁଁ ତମ ସମସ୍ତଙ୍କି ବର୍ମା ନେଇଯିବି। ଏ ଜାତିରେ ଥାଇ ଲାଭ କଣ?"

'କିନ୍ତୁ ମୁଁ ଏ ଜାତିକି ଛାଡ଼ିବି ନାହିଁ ବାପ! ମତେ ସେମାନେ ନିର୍ଯ୍ୟାତନ କରନ୍ତୁ, ଏକଘର କରନ୍ତୁ, ମୋର ଦୃଢ଼ପଣ ଦେଖି ଆଉ ପାଣ୍ଠୀ ଫେରିବେ,

ମୋ ସାଥିରେ ମିଶିବେ। ତେଣିକି ଏ ସମାଜର ସଂସ୍କାର ହୋଇଯିବ; କିନ୍ତୁ ଆମେ ଯଦି ଶେଷରେ ତାଙ୍କୁ ତ୍ୟାଗ କରୁଁ, ସେମାନେ କିଣ ବାଝଙ୍କୁ ଆସିବେ ?"

ତାରାମଣି ଆଖିରେ ଲୁଗା ଦେଇ କହିଲେ—"ବାପ ! ଯାହା କରୁଛନ୍ତି ଏ ଜାତି ! ମୋ ରେବର ମଲାମୁହଁ ଆମକୁ ଟିକିଏ ଦେଖେଇ ନାହାନ୍ତି। ତା ଶଶୁର ଆମକୁ ଦୁଇ ବର୍ଷ ହେଲା ଦୁଆର ମନା କରୁଛି ! ଯେ ଲୁଚେଇ କରି ହେଲେ ଆମ ସଙ୍ଗେ ସମ୍ପର୍କ ରଖିଥିଲା, ସେ କିଣ ଆଉ ଅଛି କି ?"

ଜଗନ୍ନାଥ ଝଙ୍କାରେ କହିଲେ—"ସେ ଦେବୀ ସ୍ୱର୍ଗରେ, ଆଉ ତାର କୋଳରେ ମୋ ପ୍ରିୟତମା କନ୍ୟା ରେବତୀ। ବାପ ! ମୋର ମୂର୍ଖତାରୁ ରେବତୀର ସର୍ବନାଶ। ମୁଁ ଜଣେ ଚଣ୍ଡାଳ, ଜାଣି ଶୁଣି ଦଶ ବର୍ଷର ଶିଶୁକୁ ବିଭା ଦେଲି, ଜାଣି ଶୁଣି ସେତେବେଳେ ଜାତିକୁ ଭୟ କରି ମୋର ସୁବର୍ଣ୍ଣ ପ୍ରତିମାକୁ ଭସେଇଲି; ଆଉ କୋଉଁ ବାପ କେବେ ଝିଅର ବାଲ୍ୟ ବିଭା ନ ଦେଉ। ମୁଁ ମର୍ମେ ମର୍ମେ ତା ଲାଗି ମଲିଣି।"

ତାରାମଣି କାନ୍ଦି କାନ୍ଦି ହୋଇ କହିଲେ—"କିଣ ସୁଖ ମୋ ଝିଅ କଲା ! ବାର ବର୍ଷ ଦନୁଁ ପୁଅର ମା ହୋଇ ବସିଲା। ଭଲ ଘର ବରରେ ଦେଇ-ଥିଲୁଁ, ହେଲେ କପାଳ ଏମନ୍ତ—।"

ଜଗନ୍ନାଥ କହିଲେ—"କାହିଁକି ଅକାରଣ କପାଳକୁ ଦୋଷ ଦେଉଛ ? ବାଲ୍ୟବିବାହ ଶରୀର ବିରୁଦ୍ଧରେ ଭୟଙ୍କର ଅତ୍ୟାଚାର। ଆଗ କାଳରେ ବାଲ୍ୟ ବିବାହ ଥିଲା—ଲୋକେ ଥିଲେ ସଂଯମୀ। ଆଜିକାଲି ବିଳାସ—ବ୍ୟସନ ହେଲାଣି ଇଷ୍ଟଧର୍ମ। "ହେଲେ ବାବୁର ଏତେ ଅଧଃପତନ ହେବ, ଏହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି।" ରଘୁନାଥ ଏହା କହି ବ୍ୟଥିତ ନୟନରେ ତଳକୁ ଚାହିଁଲା। ଜଗନ୍ନାଥ କହିଲେ, "ତାର ବାପ ତାର ସର୍ବନାଶ କଲା। ତାହାର ଏକା ନୁହେଁ, ସମସ୍ତଙ୍କର କଲା। ଏବେ ଅନୁତାପରେ ଜଳି ମରୁଛି। ଆଉ ସେ ଧନ ନାହିଁ, ଶାଶୁ ବୋହୂ ଗଳାଦନୁଁ ବୁଢ଼ାର ଝାଣ ଭାଙ୍ଗିଛି।"

ତାରାମଣି କହିଲେ—"ନୂଆବୋହୂ ଯେ ଆସିଛି, ସେ ସ୍ୱାମୀ ଶଶୁର କାହାର ବାଧ୍ୟ ନୁହେଁ। ଯେପରି ଖଳ ସେହିପରି ନୁରପ୍ରକୃତ। ତମେ ମରି ଶୋଇଥିଲେ ଅନେଇଁ ଯିବ ନାହିଁ। ବାପ ଝିଅ ଦୁହିଙ୍କି ସେ କଥାରେ ଲୁହା ତତେଇ ଚିଆଁ ଦେଉଛି।"

ମା'ର କଥାରେ ରଘୁନାଥର ଗୁପ୍ତ ଭିତରେ ଗୋଟିଏ ମର୍ମାନ୍ତିକ ଶୂଳ ବେଦନା ଉଠିଲା ପରି ହେଲା। ସେ ଦାଣ୍ଡକୁ ବୁଲି ବାହାରିଲା।

ନିବିଡ଼ ଜ୍ୟୋତ୍ସ୍ନାମୟୀ ମଧୁନିଶା । ଚତୁର୍ଦ୍ଦିଗ ନୀରବ ନିସ୍ତବ୍ଧ । ପ୍ରକୃତିର ମହାବିଶ୍ରାମ, କେବଳ ଏ ବିଶ୍ରାମ, ପ୍ରହରରେ ଜାଗ୍ରତ—ନୀଳାକାଶ ତଳେ ସୁଧାମୟ ସୁଧାକର, ଦୀପ୍ତିମୟୀ ତାରକାଶ୍ରେଣୀ, ଆଉ ଅବନୀ ତଳେ ନୈଶ କୁସୁମ, ଉଦ୍ୟ ଅନ୍ତରାଳରେ ନିଶାରାଣୀ, ଯୂଥିକା, ଜହ୍ନିଫୁଲ; ପୁଷ୍କରିଣୀର ସ୍ଥିର ତରଙ୍ଗ ଉପରେ ହାସ୍ୟମୟୀ କୁମୁଦିନୀ । ନୈଶ ପ୍ରହରୀ ଚନ୍ଦ୍ର ଜାଗ୍ରତ । ତାହାର ପରିଜନ କେତେକରେ ନିଦ୍ରାସୁଖ ଭୋଗ କରିବେ ? ଆଜି ଜାଗ୍ରତ ସେହି ପୁରାତନ ପୁଷ୍କରିଣୀ କୂଳରେ ସେହି ଚିର ଆଦରର ଅଶୋକ ତରୁତଳ ମୂଳେ ଯୋଡ଼ିଏ ବ୍ୟକ୍ତି । ଜଣେ ପୁରୁଷ, ଜଣେ ରମଣୀ । ଏହି ଅଶୋକ ତରୁତଳ ଉପରେ, ଏଇ ତାରା ଚନ୍ଦ୍ରଙ୍କୁ ସାକ୍ଷୀ କରି ଦିନେ ଏହି ପଥର ପାହାଚ ଉପରେ ଏହି ଦିଓଟି ପ୍ରାଣୀ ଏହି ପରି ବସିଥିଲେ । ଏହିପରି ପରସ୍ପର ମୁହଁକୁ ଚାହିଁ କାନ୍ଦିଥିଲେ । ସେତେବେଳେ ଉଭୟେ ଥିଲେ ସଂସାରନଭିଜ୍ଞ । ସଂସାରର ଦୁଃଖ—ସଂସାରର ଜଞ୍ଜାଳ—ସଂସାରର କଳଙ୍କ କାଳିମା—ଉଭୟର ପ୍ରାଣକୁ ସ୍ପର୍ଶ କରି ନ ଥିଲା । ସେତେବେଳେ ଉଭୟେ ଥିଲେ ପ୍ରକୃତିର ସନ୍ତାନ—ନିର୍ମଳ ପୂଜାଫୁଲ । ଉଭୟଙ୍କ କତିରେ ଉଭୟଙ୍କ ପ୍ରାଣ ନିବେଦିତ ଥିଲା ।

ପରସ୍ପର ଥିଲେ ପରସ୍ପରର ଜୀବନ । ଏକ ବିନା ଅନ୍ୟକୁ ଜାଣି ନ ଥିଲେ । ନବଯୌବନର ଦକ୍ଷିଣା ପବନରେ ଫୁଟିଥିଲେ ଦିଓଟି ମନୋହର କୁସୁମ, ଗୋଟିଏ ଗୋଲାପ-ଗୋଟିଏ ମଲ୍ଲୀ, ଗୋଟିଏ କୁମୁଦ-ଗୋଟିଏ ପଦ୍ମିନୀ । ଉଭୟଙ୍କ ହୃଦୟରେ ଗୋଟିଏ ପ୍ରେମ ସଙ୍ଗୀତ ବାଜି ଉଠିଥିଲା—ନବୀନ ଅନୁରାଗ ତନ୍ତ୍ରୀରେ, ନବୀନ ଆଶାର ମୋହରେ, ପ୍ରେମ-ପାରିଜାତ ବନର କୋକିଳ କୋକିଳା ଉଭୟେ, ବଞ୍ଚିଥିଲେ କେବଳ ପରସ୍ପର ପାଇଁ ! ସେଦିନ ଜଗତ ସେମାନଙ୍କ କତିରେ ଥିଲା ତୁଚ୍ଛ, ବାସ୍ତବ ଜୀବନ ଅସାର । କଳ୍ପନାର କଳ୍ପଲୋକ ସେମାନେ ରଚନା କରିଥିଲେ ମନେ ମନେ, ଇନ୍ଦ୍ରର ନନ୍ଦନ ବନ ଆଙ୍କିଥିଲେ ପ୍ରେମତୂଳିକାରେ । ଲକ୍ଷ୍ମୀନାରାୟଣ ପରି ଥିଲେ ପରସ୍ପର ଏକାନ୍ତ ଅବିଚ୍ଛିନ୍ନ ।

କିନ୍ତୁ ସେ ଦିନ ଆଉ ନାହିଁ । ନିଷ୍ଠୁର ନିୟତି ଉଭୟଙ୍କୁ ଭିନ୍ନ କରିଲା । ସେମାନଙ୍କର ଶତ ପ୍ରତିଜ୍ଞା ସତ୍ତ୍ୱେ ଅନ୍ୟ ପ୍ରାଣ ସହିତ ଯୁକ୍ତ କଲା, ଅନ୍ୟର ସୁଖ ଦୁଃଖ ଭୁଞ୍ଜିବାକୁ ଦେଲା । କର୍ମର ଅଗ୍ନିପରୀକ୍ଷାରେ ତାଙ୍କୁ ପ୍ରବେଶ କରିବାକୁ ହେଲା । ଏତେଦିନେ କର୍ମଫଳର ଅବସାନ ହେଲା ପରା ? ଏତେ ଦିନେ ସ୍ୱକୃତିରୁ ନିସ୍ତାର ପାଇଲେ ପରା ? ପୁଣି ପୃଥିବୀର ଏ ପାରରେ—ଯେଉଁ ପାରରେ ସେମାନେ ଆଉ ପରସ୍ପରକୁ ପାଇବେ ନାହିଁ ଭାବିଥିଲେ, ସେହି ପାରରେ ତାଙ୍କୁ ଆଣି ପରସ୍ପରର ସମ୍ମୁଖୀନ କରି ଭେଟାଇ ଦେଲା—ସେହି ନିୟତି । ସ୍ମୃତିର ଶତ ବୃଶ୍ଚିକଦଂଶନ ହୃଦୟରେ ଜ୍ୱାଳା କରୁଥିଲେ ସୁଦ୍ଧା ଉଭୟେ ଉଭୟଙ୍କୁ ଦେଖି ଦଣ୍ଡକ ଲାଗି

ଆତ୍ମବିସ୍ମୃତ ହେଲେ; ଦଣ୍ଡକ ଲାଗି ସେମାନେ ମିଳନର ମଧୁ ଆସ୍ୱାଦନ କଲେ ।
ଦଣ୍ଡକ ଲାଗି ଦୁହେଁ ଦୁହିଙ୍କୁ ଚାହିଁ ଆତ୍ମାର ଶାନ୍ତି ବିଧାନ କଲେ ପରା !

ଆଉ ଏ ଦୁଇଜଣଙ୍କୁ ଚାହିଁ ବାର କୁଅମୂଳେ ବସିଥିଲା ଗୋଟିଏ ଦୁର୍ବଳା ବୁଢ଼ୀ । ଦୁଇଜଣଙ୍କର ଆତ୍ମାକୁ ଏକ ସୂତାରେ ସିଇଁଛି ଯାହାର ହାତ, ଦୁଷ୍ଟର ଦୁର୍ନାମରୁ ରକ୍ଷା କରିବା ଲାଗି ଦୁଇଜଣଙ୍କୁ ସେ ନିଭୃତରେ ଜଗି ବସିଛି । ଏହିପରି ସେ ଦିନେ ଉଭୟଙ୍କୁ ଏକତ୍ର ଦେଖିଥିଲା । ସେଦିନ ଉଭୟେ ଉଭୟ ଲାଗି ବ୍ୟାକୁଳ, ଦୁଇଟି ପ୍ରାଣ ଏକାଠି ମିଶିଯିବା ପାଇଁ ତତ୍ପର । ଜଳ ବକ୍ଷରେ ରେଖା ଆଙ୍କିଲା ପରି ସମାଜ, ସ୍ୱଜନ ଯେତେ ତାଙ୍କୁ ଭିନ୍ନ କଲେ ସୁଦ୍ଧା ଦୁଇ ଜଣ ପ୍ରେମର ବିଦ୍ୟୁତ ଆକର୍ଷଣରେ ଏକାଠି ମିଶିଥିଲେ । ସେ ମିଳନର ସାକ୍ଷୀ ଥିଲା ସେ ନିଜେ ! ସେ ଦିନ ଆଉ ଏ ଦିନ ! ତା ପରେ ବର୍ଷ ବର୍ଷ ବିତି ଯାଇଛି, ବର୍ଷ ବର୍ଷ ବସି ବୁଢ଼ୀ ଦୁହିଙ୍କର ବିଚ୍ଛେଦ ବାହୁନିଛି, ଗୀତ ବାନ୍ଧି ଗାଇଛି, କାନ୍ଦି କାନ୍ଦି ଆଖିର ଜ୍ୟୋତି ହରାଇଛି; ତଥାପି ସେମାନଙ୍କୁ ଫେରି ପାଇ ନାହିଁ । କ୍ରମେ ଗୋଟି ଗୋଟି କରି ତାହାର ସ୍ନେହର ସାଥୀ, ସୁହୃଦଙ୍କୁ ହରାଇଛି, କେତେ ସେ ହରାଇଛି, ତାର କଣ ଆଉ ତାଲିକା ସେ ରଖିଛି ?

ସେମାନଙ୍କ କଥା ଗୋଟି ଗୋଟି ତାର ମନେ ପଡ଼ି ହୃଦ କରିରୁଛି । ନୀରବ ନୀଳାକାଶକୁ ଚାହିଁ ନୀରବ ପ୍ରାଣରେ ବସିଛି—ବୃଦ୍ଧା ପିତେଇ ଆଉ ବହିଛନ୍ତି ସୀତା ଓ ରଘୁନାଥ ।

ସୀତାର ଭାଗ୍ୟ-ରବି ଚିରକାଳ ପାଇଁ ଅସ୍ତମିତ । ତାହାର ସ୍ୱାମୀ ଯାଇଛି, ପୁତ୍ର ଯାଇଛି, ମା ଯାଇଛି, ଭଉଜ ଯାଇଛି—ଯେ ତାକୁ ସ୍ନେହ କରନ୍ତେ, ଯେ ତାର ଦୁଃଖରେ ଦୁଃଖୀ, ସୁଖରେ ସୁଖୀ ହୁଅନ୍ତେ, ସେ ସମସ୍ତେ ଗୋଟି ଗୋଟି ଯାଇଛନ୍ତି; କିନ୍ତୁ ଯାଇ ନାହିଁ ସେ ନିଜେ । ଆଉ ଯାଇ ନାହିଁ ତାର ଅନୁତପ୍ତ ବୃଦ୍ଧ ପିତା—ଯାହାର ମୂର୍ଖତା ଫଳରେ ଆଜି ସେ ହତଭାଗିନୀଠୁ ବଳି, ସେ ଯାଇ ନାହିଁ । ବୃଦ୍ଧ ଅକର୍ମଣ୍ୟ, ବାତାକ୍ରାନ୍ତ ହୋଇ ପଡ଼ି ରହିଛି ସେ ବୁଢ଼ା—ତାହାର କୃତ-କର୍ମର ଅନୁତାପ ଲାଗି, ପ୍ରାକ୍‌କୃଷ୍ଟିର ଲାଗି, ପୁତ୍ର ଓ ପୁତ୍ରବଧୂର ନିଷ୍ଠୁର ନିର୍ଯାତନ ଭୋଗ କରି ପଡ଼ି ରହିଛି ଗୋଟି ଗୋଟି ଟଙ୍କକଥା ସ୍ମରଣ କରିବା ଲାଗି । ତାହାର ସେବା, ତାହାର ଶୁଶ୍ରୂଷାର ଭାର ଘେନିଛି ସୀତା ।

ସୀତାକୁ ଚାହିଁ ବୁଢ଼ାର ପ୍ରାଣ ଫାଟିଯାଏ । ରୁକ୍ଷକେଶା, ଅଳଙ୍କାରହୀନା, ବିଷାଦିନୀ, ଅନାଥିନୀ ସୀତା ମୂର୍ତ୍ତିକି ଚାହିଁ ବୁଢ଼ାର ଆତ୍ମା କାନ୍ଦି ଉଠେ—ଜଣକ ଲାଗି । ଆଜି ଯଦି ସେ ତାହାରି ହାତ ଧରି ଥାନ୍ତା, ସେ ଯଦି ଘରର କର୍ତ୍ତୃତ୍ୱ ଘେନିଥାନ୍ତା, ତେବେ କଣ ଏପରି ହୋଇଥାନ୍ତା ? କୁବେର କାନନର ଶ୍ରୀ ସମ୍ପଦ କଣ ଏହିପରି ନିର୍ଜଳା ମରୁଭୂମିରେ ପରିଣତ ହୋଇଥାନ୍ତା ? ତାହାର ନିଜ ହାତରେ ସେ ସ୍ୱପ୍ନାମୟ ରସାଳ ତରୁ କର୍ତ୍ତନ କରିଛି । ଏବେ ଦୋଷ ଦେବ

କାହିଁକି ? ସେହି ଚନ୍ଦ୍ରାରେ ଈର୍ଷ୍ୟା ଝୁରି ଝୁରି ମଲା । ସେ ଚକ୍ରାନ୍ତରେ ବାଧ୍ୟ ପୁଣି ଦେଶଦ୍ରୋହୀ ହୋଇ ଅଧଃପତନର ଚରମକୁ ଗଲା । ସୁନାର ଦେଉଳ ଚୂନା ହେଲା । ଘରର ସମ୍ପତ୍ତି ସରିଲା । ମାଲି ମୋକଦ୍ଦମାରେ, ଋଣଦାୟରେ ଗୃହ ସର୍ବସ୍ୱାନ୍ତ ହେଲା । ବୁଢ଼ା ବୟସକୁ ଏହା ଦେଖିବାକୁ ଥିଲା—ଏହା ଅଙ୍ଗେ ନଭେଇବାକୁ ଥିଲା ! ଲକ୍ଷ୍ମୀପ୍ରତିମା ଅର୍ଦ୍ଧାଙ୍ଗିନୀ ସ୍ୱର୍ଗକୁ ବିଜେ କଲେ; କିନ୍ତୁ ରଖିଗଲେ ଅନାଥ—ଅଶିତି ରୋଗାକ୍ରାନ୍ତ ବାଷଠି ବର୍ଷର ବୁଢ଼ା । ଦୁଷ୍କୃତ ଫଳରେ ଯାହା କଡ଼କ ଯମ ପୁଣି ଆସିବାକୁ ଅମଙ୍ଗ । ହେଲେ ସବୁ ଆର୍ଦ୍ଦୋଳି ସବୁ ଉତ୍କଣ୍ଠ ସହେ ସୀତା । ପାଷାଣ ପ୍ରତିମା ନୀରବ ମୁଖରେ ସବୁ ଯନ୍ତ୍ରଣା ସହି ବୁଢ଼ା ବାପାକୁ ସ୍ନେହାଞ୍ଚଳରେ ଘୋଡ଼ାଇ ରଖିଛି ଭାଇ ଭାଉଜର କ୍ରୂର ବାକ୍ୟବାଣରୁ । ସୀତାର ମହତ୍ତ୍ୱ ଚନ୍ଦ୍ରାରେ ରଘୁନାଥର ପ୍ରେମମୟ ହୃଦୟ ପୂର୍ଣ୍ଣ ହୋଇଗଲା ।

ସେ ସୀତା ପାଦତଳେ ବସି ତାହାଙ୍କ ଆଲୋଚନା କରୁଥିଲା । ତାହାର ପଶ୍ଚାତ୍-ଜୀବନର ସମୁଦାୟ କାହାଣୀ ସେ ପ୍ରେମମୟୀର ପାଦତଳେ ନିବେଦନ କରିଛି । ଆଜି ମଧ୍ୟ ତା ଗଳାରେ ସେହି ସୁନା ସୂତା ' ଏତେ ପ୍ରେମର ସେ କଣ ପ୍ରତିଦାନ ଦେବ ନାହିଁ ? ଉଭୟେ ନୀରବରେ ପରସ୍ପରକୁ ଚାହିଁଲେ, ହୃଦୟ ଭିତରେ ଦେଖିଲେ ପରସ୍ପର ହୃଦୟର ପ୍ରିୟ ମୂର୍ତ୍ତି ଅଦ୍ୟାପି ଜୀବିତ !

ରଘୁନାଥ ମୁଣ୍ଡ ଟେକି କହିଲା—"ସୀତା ! ସବୁ ଶୁଣିଲ, ମତେ କଣ କ୍ଷମା କରିବ ନାହିଁ ?"

ସୀତା ନିଜକୁ କହିଲା ପରି କହିଲା—"କ୍ଷମା ! କଣ କ୍ଷମା ! କଣ ପାଇଁ ?"

ରଘୁନାଥ ପ୍ରତ୍ୟୁତ୍ତର କଲା—"ମୁଁ ଯେ ତୁମକୁ ଭୁଲି ଅନ୍ୟକୁ ବିବାହ କଲି, ତୁମ କତରେ ଯେଉଁ ପ୍ରତିଜ୍ଞା କରି ଦେଶତ୍ୟାଗୀ ହୋଇଥିଲି, ତାହା ଭଙ୍ଗ କଲି !"

ସୀତା କିଛିକ୍ଷଣ ନୀରବ ରହି କହିଲା "କ୍ଷମା ମୁଁ କଣ ଦେବି ତୁମକୁ ? ତୁମେ ମୋ ନିକଟରେ କିଛି ଦୋଷ କରି ନାହିଁ । ମୋର କପାଳ ମନ୍ଦ ।"

"ତା ନୁହେଁ ସୀତା !" ଆବେଗରେ ରଘୁନାଥ କହିଲା, "ତା ନୁହେଁ ସୀତା !" "ମୁଁ ଆସିଛି, ପୁଣି ଫେରି ଆସିଛି, ତୁମକୁ ସୁଖୀ କରିବାକୁ ପୁଣି ଫେରି ଆସିଛି । ତୁମେ ଦୟା କରି ମୋ ପ୍ରସ୍ତାବରେ ସମ୍ମତ ହେଲେ ସବୁ ଦୁଃଖ, ସବୁ କଷ୍ଟ, ଅତୀତର ସବୁ ଶୋକ ଭୁଲିଯିବ । ସୀତା ! ତୁମେ କଣ ମତେ ଗ୍ରହଣ କରିବ ?"

ସୀତା ସ୍ତମ୍ଭିତ ହୋଇଗଲା । ଇଏ କଣ ! ଇଏ କଣ—ଉନ୍ମାଦର ପ୍ରଳାପ ! ସୀତା ଗ୍ରହଣ କରିବ ତାକୁ ? କାହାର ଗ୍ରହଣ କରିବ ?

ରଘୁନାଥ ତାଠୁ ଉତ୍ତର ନ ପାଇ କହିଲେ—"ସୀତା ! ଦେବ ? ମୁଁ ତୁମକୁ ସ୍ନେହେ—ତୁମକୁ ବିବାହ କରିବି ।"

"ମୋତେ—ମୋତେ—" ସୀତା ଆଉ କହି ପାରିଲେ ନାହିଁ । ରୋଷ-ଦୀପ୍ତିରେ ତାହାର ଆଖି ଦୁଇଟା ଦାଉ ଦାଉ ଜଳି ଉଠିଲା ।

ସେ ଏକଆଧ ଘୁଞ୍ଚି ଯାଇ କହିଲେ—"ରଘୁନାଥ ! ସାବଧାନ ! କଣ ବୋଲି କଣ କହୁଚ ? ଅନ୍ୟର ଭାର୍ଯ୍ୟାକୁ ତୁମେ ବିବାହ ହେବାକୁ ଚାହଁ । ନିର୍ଲ୍ଲଜ୍ଜ ! ମତେ କଣ ଅନନ୍ତ ନରକରେ ବୁଡ଼ାଇବ ? ମୋ ସ୍ୱାମୀ ମୋ ଶ୍ୱଶୁର କୁଳରେ ମୁଁ କାଳି ଦେବି ? ତୁମେ ଏଇ କଥା କହିବାକୁ ଏତେ କେନ୍ଦ୍ରଗ ହୋଇ ମୋ ସହିତ ଦେଖା କରିବାକୁ ଆସିଥିଲ ? ସାବଧାନ— !"

ରଘୁନାଥ କିଛିକ୍ଷଣ ତୁନି ରହି କହିଲେ—"ସୀତା ! ଭୁଲ ବୁଝିଛ । ତୁମର ସ୍ୱାମୀ କିଏ ? ତୁମର ମନେ ଅଛି— ?"

ସୀତା କୁପିତା ଫଣିନୀ ପରି ଉଠି ଠିଆ ହେଲେ । ରୋଷପୂର୍ଣ୍ଣ ଗମ୍ଭୀର-ସ୍ୱରରେ କହିଲେ—"ଆଉ ମୋ ମୁହଁ ଦେଖିବାକୁ ଆସ ନାହିଁ । ମୁଁ ସେ ସୀତା ନୁହେଁ—ସେ ସୀତା ତ ଅନେକ କାଳୁ ମଲାଣି । ମିଶ୍ରବଂଶର ବୋହୂ ମୁଁ—ଅମୂଲ୍ୟମୋହନର ମା—ଆଜି ଏ ମୁହୂର୍ତ୍ତରେ ମୋ ସ୍ୱାମିର ପବିତ୍ର ମୂର୍ତ୍ତି ମୋ ଆଖି ଆଗରେ—ପାପିଷ୍ଠ ! ଦୂର ହୁଅ, ଦୂର ହୁଅ ମୋ ଆଖି ଆଗରୁ । ଆଉ କାହାକୁ ବିଭା ହୁଅ—ସୀତାକୁ ନୁହେଁ ।" ସେ ଫେରି ଚାଲି ଯାଉଥିଲେ, ତପଜିତ ରଘୁନାଥ ତାହାର ଅସମ୍ଭବ ତେଜଃପୂର୍ଣ୍ଣ କଥା ଶୁଣି ଏକାବେଳକେ ହତବୁଦ୍ଧି ହୋଇଗଲେ । ତଥାପି ସାହସ କରି ଡାକିଲେ "ସୀତା ରୁହ, ତୁମ ମନରେ କଷ୍ଟ ଦେଲି, କ୍ଷମା କର ।" ସୀତା ତୁନି ହୋଇ ଠିଆ ହେଲେ । ରଘୁନାଥ କହିଲେ—"ମୁଁ ତୁମକୁ ସୁଖୀ କରିବାକୁ ଚାହୁଁଥିଲି ।"

"ମତେ ସୁଖୀ କରିବାକୁ ଚାହଁ" ତେବେ କଲ୍ୟାଣ କର, ସୀତା ଶୀଘ୍ର ମରୁ; ଆଉ ତା ସ୍ୱାମୀ, ଯାହାର ଧର ସେ ମନ୍ଦିର ବର୍ଷ କରିଛି, ଯାହାର ପୁଅକୁ ସେ ଗର୍ଭରେ ଧରିଥିଲା, ସେହି ସ୍ୱାମୀ, ସେହି ପୁଅକୁ ଜନ୍ମେ ଜନ୍ମେ ଆପଣାର କରି ପାଉ । ମହାପ୍ରଭୁ ମତେ ସେହି ସ୍ୱାମୀ, ସେହି ପୁଅ ଦିଅନ୍ତୁ ।"

ସୀତା ଦ୍ରୁତପଦରେ ସ୍ଥାନ ତ୍ୟାଗ କଲେ । ରଘୁନାଥ କିଛିକ୍ଷଣ ହେଲା ପାହାଚ ଉପରେ ବସି ରହିଲେ । ଆଶାର କୁହୁକ ତାର ତୁଟିଛି, ମନର ଭ୍ରାନ୍ତି କଟିଛି, ତାକୁ ସେହି ଦିନୁଁ ଆଉ କେହି କଟକରେ ଦେଖି ନାହାନ୍ତି ।




ପୃ ୨୯୨ ସ୍ଥା ।

ନିଶବଂଶର ବୋହୂ ମୁଁ × × × × ପାପିଷ୍ଠ !
ଦୂର ହୁଅ, ଦୂର ହୁଅ ମୋ ଆଖି ଆଗରୁ ।

# ପଞ୍ଚତ୍ରିଂଶ ଅଧ୍ୟାୟ ।



ରଘୁନାଥ କୁଆଡ଼େ ଯିବ ? ପ୍ରାଣରେ ଏ ଦାରୁଣ ଅଶାନ୍ତି ଘେନି ସେ କୁଆଡ଼େ ଯିବ ? ପୁଣି ବର୍ମା ଫେରିଯିବ ? ସେ ତାହାର ସ୍ଥିର କରି କଲିକତାର ଟିକଟ କିଣିଲା । ରେଳରେ ବସି ଝରକା ତକ୍ତା ଉପରେ ମୁଣ୍ଡ ରଖି ଭାବିଲା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ । କାହିଁକି ତାହାର ଜୀବନରେ ଏତେ ଦୁଃଖ, ଏତେ ବିଚ୍ଛେଦ ? ଯାହାକୁ ସେ ଆପଣାର ଭାବିଲା, ସେ ତାକୁ ତ୍ୟାଗ କଲା । ସୀତା କି ନିଷ୍ଠୁର ! ଏତେ ବର୍ଷର ପ୍ରେମ ସେ ଉପେକ୍ଷା କଲା । ଅଭିମାନରେ ତା ଶ୍ରୁତ ଜଳ ଉଠିଲା । କିନ୍ତୁ ଦିନ ପୂର୍ବର କଳ୍ପନା ତାହାର ସ୍ମୃତିପଥରେ ଉଦିତ ହୋଇ ତାକୁ ଯନ୍ତ୍ରଣା ଦେଲା ।

ରେଙ୍ଗୁନର ସେ ଅତୁଳ ପ୍ରାସାଦ ମାୟା ବିନା ଶୂନ୍ୟ । ପିଲାମାନେ କଲିକତାରେ । ଏକାକୀ ସେ କିପରି ବିଜନପୁରୀରେ ବାସ କରିବ ? ପୁଣି ଶ୍ୱଶୁରଙ୍କର ପ୍ରସ୍ତାବ କଥା ଚିନ୍ତା କଲା । ରୂପଗୁଣବତୀ ଲଳିତାକୁ ସେ ଯଦି ବିବାହ କରେ, କଣ କ୍ଷତି ? ତାର କି ବୟସ ? ସୁଲକ୍ଷ ଦୂର ନାହିଁ, ତାର କି ବୟସ ? ବର୍ତ୍ତମାନ ସୁଦ୍ଧା ସେ ଯୁବକ; ମାତ୍ର ଲଳିତା ଉପରେ ତାହାର ଆଦୌ ମୋହ ହେଲା ନାହିଁ । ମାୟାର ସ୍ଥାନ ଅନ୍ୟ ଜଣେ ରମଣୀ ଅଧିକାର କରିବ, ଏହା ତା ପକ୍ଷରେ ବିଷଦୃଶ କଳ୍ପନା ମନେ ହେଲା । ଜଣେ ଅଧିକାର କରିଥାନ୍ତା, ଯେ ଆବାଲ୍ୟ ତାର ହୃଦୟର ଆରାଧ୍ୟା ଥିଲା, ସେହି ଜଣକ ଅଧିକାର କରିଥାନ୍ତା; କିନ୍ତୁ ସେ ତ ନାସ୍ତି କଲା । ଆଉ କାହାପାଇଁ ସଂସାର ? ରଘୁନାଥ ଦୂର ବୃକ୍ଷରାଜିକୁ ଚାହିଁ ଅତୀତ ଜୀବନ ଚିନ୍ତା କଲା । କେଉଁ ଦେଶରେ ସେ ଜନ୍ମ ? କେଉଁଠି ତାର ବାସ ? ଅତି ସାନ ହୋଇଥିଲା,ପିତା ମାତା ଭଗିନୀକୁ ହରାଇଥିଲା । ଯୌବନରେ ହରାଇଲା ସୀତାକୁ । ତାକୁ ଘେନି ଘର କରିଥିଲେ ସେ ସୁଖୀ ହୋଇଥାନ୍ତା;ମାତ୍ର ତାହା ତ ତା କପାଳରେ ନ ଥିଲା । ଦେଶର ଆତ୍ମୀୟ ସ୍ୱଜନ ସବୁ ତ୍ୟାଗ କରି ସେ ହେଲା ଦେଶାନ୍ତରୀ । ବହୁଦିନ ପରେ ନରେଶ ଦାଦାର କଥା ତା ମନରେ ଉଦୟ ହେଲା । ସେ ତାକୁ ଭୁଲାଇ କଲିକତା ଆଣିଲା । ସେଠି ତା ଜୀବନର ଅପୂର୍ବ ପରିବର୍ତ୍ତନ । ପ୍ରେମମୟୀ ମାୟା ସହିତ ପରିଚୟ, ପୁଣି ବର୍ମା ଯାତ୍ରା, ସେଠି ଦ୍ୱାଦଶ ବର୍ଷ କାଳ ସୁଖର ସଂସାର ରଚନା— ସେ ସଂସାରରେ ତାର ପ୍ରିୟ ସନ୍ତାନ ସନ୍ତତିର ଜନ୍ମ, ସେଠି ରାଜସୁଖରେ ସେ ଅବଧି କାଳ କାଟିଛି, ବୋଧ ହୁଏ ଶେଷ ପର୍ଯ୍ୟନ୍ତ କାଟିଥାନ୍ତା, କିନ୍ତୁ କ୍ରୂର ମରଣ ତାହା କରି ଦେଲା ନାହିଁ । ତା ଜୀବନର ଏକମାତ୍ର ଅବଲମ୍ବନ ମାୟାକୁ ସେ ହରଣ କରି ଘେନିଗଲା କେଉଁ

ଅଜ୍ଞାତ ଦେଶକୁ । ଦିନେ ନୌକାରେ ଜହ୍ନ ରାତିରେ ସେ ଓ ମାୟା ବୁଲୁଥିଲେ, ଐରାବତୀ ନଦୀର ବିଶାଳ ବାରି ବକ୍ଷରେ । ଜହ୍ନ ଆଲୁଅ ଜଳବକ୍ଷରେ ନାଚୁଥିଲା— ମାୟା ସ୍ୱପ୍ନପୁରୀ ରଚନା କରି, ଆଉ ତା କୋଳରେ ସାକ୍ଷାତ୍ ମାୟାଦେବୀ ଭଳି ଢଳିଥିଲା ଉଷ୍ମ ପ୍ରେମାଶ୍ଳେଷରେ । ସେ ଦିନ ଯାଇଛି, ସେ ଦିନ ସେ କହିଥିଲା, "ମୁଁ ମରି ମରିଯାଏଁ !" ରଘୁନାଥ କହିଥିଲା, 'ଦିନେ ଏହି ଅକୂଳ ସମୁଦ୍ରରେ ସେ ପିଲା ଗୃହଟିକୁ ନେଇ ଭାସିବ ।' ହସି ହସି ଦିନେ ଯେଉଁ କଥା ହୋଇଥିଲା, ସେ ରହସ୍ୟ ଏବେ ବାସ୍ତବରେ ପରିଣତ ହୋଇଛି । ଗାଢ଼ ଅଶ୍ରୁସମାଚ୍ଛନ୍ନ ଆଖିରେ ନୈଶାକାଶକୁ ଚାହିଁ ରଘୁନାଥ ଭାବିଲା, ଆଉ ତାର ଜୀବନରେ କି ପ୍ରୟୋଜନ ? ଏକାକୀ ହତଭାଗା କେଉଁ ସୁଖ ଲାଗି କଲିକତା ଯାଉଛି । ସେଠିକି ଗଲେ ତ ତାର ସ୍ମୃତି ପ୍ରବଳ ହେବ । ଯେ ଯାଇଛି, ତାକୁ ସେ କଣ ଆଉ ଫେରି ପାଇବ ? ନା, ସେ ଆଉ କଲିକତା ଯିବ ନାହିଁ । ପୁଣି ଭାବିଲା କୁଆଡେ ଯିବ ? ହଠାତ୍ ତାର ମନେ ପଡ଼ିଲା ଲଛମନ ଭାଇ କଥା । ସେ ତ ତାକୁ ଡାକି ପଠାଇ-ଥିଲେ । ମାୟାର ମୃତ୍ୟୁସମ୍ବାଦ ପାଇ ମୀର ଓ ରୁକା ବଡ଼ ବ୍ୟଥିତ ହୋଇଥିଲେ । ସେମାନେ ଶୋକଦଗ୍ଧ ରଘୁନାଥକୁ ଏଲାହାବାଦ ଆସିବାକୁ ବାରମ୍ବାର ଲେଖି ପଠାଉଥିଲେ । ବର୍ତ୍ତମାନ ସେଇଠିକି ଯିବାକୁ ସେ ବାହାରିଲା ।

ବହୁଦିନ ପରେ ରଘୁନାଥ ଲଛମନ ଭାଇକୁ ଦେଖିଥିଲେ । ଆଜକାଲି ତାଙ୍କର ବହୁତ ପରିବର୍ତ୍ତନ ହୋଇ ଯାଇଛି । ସେ ଗୈରିକଧାରୀ ସନ୍ନ୍ୟାସୀ ହୋଇଛନ୍ତି । ତାଙ୍କ ସହିତ ମୀର ଓ ରୁକା ମଧ୍ୟ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିଛନ୍ତି । ରୁକା ଆଉ ଚାକିରି କରୁ ନାହିଁ । "ହିନ୍ଦୁସ୍ଥାନକି ସମାଚାର" ସେହିପରି ହପ୍ତାକୁ ହପ୍ତା ହିନ୍ଦୁସ୍ଥାନର ଦୁଃଖ ଦୈନ୍ୟ ଦୁର୍ଦ୍ଦଶାର କାହାଣୀ ବକ୍ଷରେ ଅଙ୍କନ କରି ବାହାରୁଛି । ତାର ସମ୍ପାଦକ ପୂର୍ବରେ ଥିଲେ କେବଳ ଲଛମନ୍ । ଏବେ ତାଙ୍କୁ ଜଣେ ସହକାରୀ ମିଳିଛନ୍ତି । ସେ ଦେଶଭକ୍ତ ଅବଦୁଲ୍ ଅଜିଜ୍ ।

ଅଜିଜ୍ ଦିଲ୍ଲୀର ମୁସଲମାନ୍ ଯୁବକ, ଧନୀର ପୁତ୍ର । ଶୁଭ ମୁହୂର୍ତ୍ତରେ ତାଙ୍କ କର୍ଣ୍ଣରେ ଦେଶମାତାର ପବିତ୍ର ଆହ୍ୱାନ ପ୍ରବେଶ କଲା । ସେ ତାର ପୂଜା ପାଇଁ ଅର୍ଘ୍ୟ ଭରି ବାହାରିଲେ । ତାଙ୍କ ସ୍ତ୍ରୀ ଲୁତଫ୍ ଉନ୍ନିସା ସ୍ୱାମୀର ପଦାଙ୍କ ଅନୁସରଣ କଲେ ।

ସେ ବର୍ଷ ଦିଲ୍ଲୀରେ ବକ୍ରୀଦ୍ ବେଳେ ଭୟଙ୍କର ଗୋଳମାଳ ହେଲା । ମୁସଲମାନମାନେ ହିନ୍ଦୁଙ୍କ ଉପରେ ଅମାନୁଷିକ ଅତ୍ୟାଚାର କଲେ । ଅବଦୁଲ୍ ଅଜିଜ୍ ମୂର୍ଖ ଭ୍ରାତାମାନଙ୍କର ଏ କାର୍ଯ୍ୟର ପ୍ରତିବାଦ କରି ଜାତି-ସ୍ୱଜନ ପରିତ୍ୟକ୍ତ ହେଲେ । ତାଙ୍କୁ କାଫେରଙ୍କ ବନ୍ଧୁ କହି ସ୍ୱଜାତୀୟ ମୋଲ୍ଲାମାନେ ଦଣ୍ଡ ଦେଲେ । ଅବଦୁଲ୍ ତହିଁରେ ଭ୍ରୂକ୍ଷେପ ନ କରି ଏଲାହାବାଦ ଆସି ସେହିଦିନୁ ଲଛମନଙ୍କ ସହିତ ରହିଲେ ।

ରଘୁନାଥ ଦେଖିଲା, ଦେଖି ବିସ୍ମିତ ହେଲା, ଲଛମନର ଘର ହିନ୍ଦୁ-ମୁସଲମାନର ପୁଣ୍ୟ ମିଳନଭୂମି, ସେଠି ମୋମିନ୍ ଓ କାଫେର ଦୁଇଭାଇ ଏକ ପ୍ରେମରଜ୍ଜୁରେ ଆବଦ୍ଧ, ଆର୍ଯ୍ୟ ଓ ଯବନ ଦୁହେଁ ପରସ୍ପରର ସୁହୃଦ । ସେ ମନେ ମନେ କହିଲା, "ଧନ୍ୟ ଲଛମନ ଭାଇ ! ଧନ୍ୟ ତୁମର ସାଧନା ।"

ସେହି ପବିତ୍ର ନିକେତନରେ ମୀରା ଓ ତୁକା ଯବନ ଭଗିନୀ ଲୁତଫ୍‌ଉନ୍ନିସା ଓ ତାହାର ପିଲାମାନଙ୍କୁ ଆପଣା କୋଳରେ ସାଦରେ ଗ୍ରହଣ କରିଛନ୍ତି । ସେଠି ରଘୁନାଥ ଉପସ୍ଥିତ ହୋଇ ମନରେ ଅପାର ଶାନ୍ତି ଲାଭ କଲା । ବିଶେଷତଃ ମାୟାର ବାଲ୍ୟସଙ୍ଗିନୀ ତୁକାର ଆଦର ଯତ୍ନରେ ।

ତୁକା ଆଉ ଆଗର ତୁକା ନୁହେ । ସେ ଆଜକାଲି ଭାଇ ସହିତ ମିଶି ଦେଶସେବାରେ ମନ ପ୍ରାଣ ଦେଇ ଲାଗିଛି । ତାହାର ବକ୍ତୃତା ଶୁଣି, 'ହିନ୍ଦୁସ୍ଥାନକ ସମାଗ୍ଭର'ରେ ତାହାର ଲେଖା ପାଠ କରି ଭାରତବର୍ଷରେ ସାଧାରଣଙ୍କ ଭିତରେ ଦେଶପ୍ରେମ ଜାଗି ଉଠିଛି । ତୁକା ଗ୍ରାମେ ଗ୍ରାମେ ନଗରେ ନଗରେ ବୁଲି ଦେଶପ୍ରେମବାର୍ତ୍ତା ପ୍ରଚ୍ଭର କରୁଛି ।

ତନେ ସନ୍ଧ୍ୟାବେଳେ ତୁକାର ବସିବା ଘରେ ସେ ଆଉ ରଘୁନାଥ କଥାବାର୍ତ୍ତା ହେଉଥିଲେ । ତୁକା ରଘୁନାଥକୁ କହିଲା, "ମୁଁ ତୁମର The Settler (ଦ ସେଟ୍‌ଲର୍) ସର୍ବଦା ବଡ଼ ମନୋଯୋଗ ସହିତ ପଢ଼େ । ବିଦେଶରେ ଭାରତୀୟର ଅପମାନର ତୁମେ ଯେଉଁ କରୁଣ କାହାଣୀ ସେଥିରେ ଲେଖିଥାଅ, କିଏ ତାହା ପଢ଼ି ନ କାନ୍ଦିବ ?"

ରଘୁନାଥ କହିଲା, "ଭଉଣି ! ମୁଁ କଣ ବା କରିଛି ? ନିଜର ବ୍ୟବସାୟ ଚଳାଇବାକୁ ହେଲେ ହାତରେ ପତ୍ରିକାଟିଏ ଥିବା ପ୍ରୟୋଜନ ! ମୁଁ କଣ ବା ସେଥିରେ ଲେଖେଁ ? ସେଥିରେ ଲେଖୁଥିଲା ଆଉ ଜଣେ । ତାହାର ପ୍ରାଣରେ ତୁମରି ପରି ସର୍ବଦା ଦେଶ ଓ ଦଶର ଚିନ୍ତା ଜାଗିଥିଲା । ମୁଁ ହୃଦୟର କୌସ୍ତୁଭ-ମଣିକୁ ବର୍ମା ଦେଶରେ ବିସର୍ଜନ ଦେଇ ଆସିଛି ।" ତାର କଣ୍ଠ ରୁଦ୍ଧ ହୋଇ ଆସିଲା । ସେ ଓ ତୁକା ନୀରବ ଅଶ୍ରୁଜଳରେ କେହି ଆଉ କାହାରିକୁ କିଛି କହି ପାରିଲେ ନାହିଁ ।

ତାଙ୍କ ପଛଆଡ଼େ ଠିଆ ହୋଇ ସବୁ ଶୁଣିଲା ଲଛମନ୍ । ସାମନାକୁ ଆସି କହିଲା—"ଭାଇ ରଘୁନାଥ ! ବ୍ୟଥିତ ହୁଅ ନାହିଁ । ତୁମେ ମାୟାକୁ ହରାଇ ମହାମାୟାଙ୍କୁ ପାଇଛ । ପତ୍ନୀକୁ ହରାଇ ଦେଶମାତାଙ୍କୁ ପାଇଛ । ତାଙ୍କୁ ଧର, ସେ ତୁମ୍ଭର ପରମ ଲକ୍ଷ ହୁଅନ୍ତୁ ।"

ରଘୁନାଥ କ୍ଷୁବ୍ଧକଣ୍ଠରେ କହିଲା—"ଭାଇ ! ତୁମେ ମହାତ୍ମା; ତୁମେ ପରମ ପୁଣ୍ୟବନ୍ତ । ମୁଁ ପୃଥିବୀର କ୍ଷୁଦ୍ର ଜୀବ । ମୋହର ହୃଦୟରୁ ଅସକ୍ତିର ଅନଳ ନିଭି ନାହିଁ, ତୁମର ସାଧନା, ତୁମର ନିଷ୍ଠା ମୁଁ କାହୁଁ ପାଇବି ?"

ଲଛମନ୍ ଦୁଃଖିତ ହୋଇ କହିଲେ—"ଭାଇ ! ଭୁଲ ବୁଝୁଛ । କିଏ କାହାର ସ୍ତ୍ରୀ, କିଏ କାହାର ସ୍ୱାମୀ ! ଶତ ରୂପରେ ସେହି ଭଗବାନ୍ ଆମ ଆଖି ଆଗରେ ଦେଖା ଦିଅନ୍ତି, ଶତ ରୂପରେ ଆମର ଆତ୍ମାର ପ୍ରେମ ସମ୍ଭୋଗ କରନ୍ତି, ଆମେ ସେହି ଚିନ୍ମୟ ମୂର୍ତ୍ତିକୁ ଦେଖିବାକୁ ପାଉ ନାହିଁ; କିନ୍ତୁ ଏ ମୋର ସ୍ତ୍ରୀ, ଏ ମୋର ପୁଅ, ଏ ମୋର ଜନ । ବୋଲି ଭାବୁଁ—ବ୍ୟସ୍ତ ହେଉଁ, ତାଙ୍କର ବିଚ୍ଛେଦରେ କାନ୍ଦି କାଟି ମରୁ ।"

ରଘୁନାଥ ଦୀର୍ଘଶ୍ୱାସ ସହ କହିଲା—"ମତେ କିଏ ଶିକ୍ଷା ଦେବ, ମତେ କିଏ ଏ ଚିନ୍ମୟ ପଥ ଦେଖାଇବ ? ସବୁ ଜାଣେ, ସବୁ ଶାସ୍ତ୍ର ପଢ଼ିଛି, କିନ୍ତୁ ଆତ୍ମାର ହାହାକାର ଘୁଞ୍ଚୁ ନାହିଁ । ଭଗବାନ୍ ମୋ ପ୍ରତି ଏଡ଼େ ନିଷ୍ଠୁର, କଠିନ !"

ଲଛମନ ଶ୍ରଦ୍ଧାଦୃଷ୍ଟି ସ୍ୱରରେ କହିଲେ—"ସେ ପ୍ରେମମୟ ହରି କାହାର ପ୍ରତି ନିଷ୍ଠୁର ନୁହନ୍ତି, ସେ ଚିତ୍‌ପ୍ରେମ, ସଦାନନ୍ଦମୟ ଭୂମା—ତୁମର ଆତ୍ମାର ଆତ୍ମା । ଆପଣା ଆତ୍ମାକୁ ଅବଜ୍ଞା କରୁଛ ରଘୁନାଥ ? ତୁମେ ଏତେ କାଳ ଏତେ ଭୋଗ କଲ, କାହିଁ ତୁମର ଭୋଗର ପିପାସା ମେଣ୍ଟିଲା କି ? କିନ୍ତୁ ନିବୃତ୍ତିରେ ପରମାନନ୍ଦ ଅଛି, ଏହିଟା ତୁମେ ବୁଝି ନାହିଁ । ମନୁଷ୍ୟ ଲକ୍ଷଶୂନ୍ୟ ହୋଇ ଖାଲି ଦେହ ପଛରେ ଧାଇଁ ପାରେ କି ? ମୁଁ ଆଜୀବନ ବ୍ରହ୍ମଚାରୀ, ଅଥଚ ସଂସାରାଶ୍ରମରେ ରହିଛି । ମୋର ସ୍ତ୍ରୀ ସଦା ବ୍ରହ୍ମଚାରିଣୀ, ଅଥଚ ସେ ସ୍ୱାମୀ ସେବନ ଘର କରୁଛି । ମୋର ଆଦର୍ଶ କଣ ଜଗତର ଆଦର୍ଶ ? ତା ନୁହେ, ସମସ୍ତେ କଣ ମୋ ପରି ରହିବେ ? ମୁଁ ତାହା କାମନା କରୁ ନାହିଁ । ତାହାହେଲେ ସୃଷ୍ଟି ବ୍ୟର୍ଥ ହେବ, ଜଗତ୍ ବୁଡ଼ିଯିବ । ଯାହା ଅସମ୍ଭବ, ଅସ୍ୱାଭାବିକ, ତାହା ଜଗତର ଆଦର୍ଶ ହୋଇ ପାରେ ନାହିଁ; କିନ୍ତୁ କାରଣ ଅଛି ରଘୁନାଥ, ମୁଁ ଜଣକୁ ବଡ଼ ଭଲ ପାଏଁ, ତା ଲାଗି ମୁଁ ସବୁ ତ୍ୟାଗ କରିଛି, ଆବଶ୍ୟକ ହେଲେ ଏ ପ୍ରାଣ ମଧ୍ୟ ଦେବି । ତା ଲାଗି ମୁଁ ବେତ ମାଡ଼ ସହିଛି, ଜେଲଖାନା ଯାଇଛି, ସମାଜଚ୍ୟୁତ ହୋଇଛି, ସଂସାର ତ୍ୟାଗ କରିଛି—ସେ ଜଣକ କିଏ ଜାଣ ? ସେ ମୋର ଦେଶମାତା, ମୋର ଇଷ୍ଟଦେବୀ । ତାଙ୍କୁ ମୁଁ ନିର୍ଜୀବ ମୃତ୍ତିକା ମନେ କରେ ନାହିଁ, ସେ ମୋର ଜୀବନ୍ତ ଦେବୀ ।" ଲଛମନ ଭକ୍ତିଭରେ ମୁଣ୍ଡ ନୁଆଁଇଲେ ।

ରଘୁନାଥର ହୃଦୟ ତନ୍ମୟ ହୋଇଗଲା । କିଛିକ୍ଷଣ ପରେ ଲଛମନ କହିଲେ—"ଭାଇ ! ତୁମେ କଣ ଦେଶମାତାର ସେବା କରି ପାରିବ ନାହିଁ ? ତୁମର ଲକ୍ଷ ହଜି ଯାଇଛି, ତୁମେ ଶାନ୍ତି ଖୋଜି ବୁଲୁଛ, ଦେଶମାତାର ପଦପ୍ରାନ୍ତରେ ତୁମେ କଣ ସେ ଶାନ୍ତି ପାଇବ ନାହିଁ ?"

ସେତେବେଳେ ସୂର୍ଯ୍ୟର ଶେଷ ଆଭା ଟିକକ ଯମୁନାର ବିଶାଳ ବାରିବକ୍ଷ ଉପରେ ନାଚି ନାଚି ବିଚିତ୍ର ବର୍ଣ୍ଣର ଅପୂର୍ବ ଇନ୍ଦ୍ରଜାଲ ସୃଷ୍ଟି କରୁଥିଲା। ଆକାଶର ଅନନ୍ତ ନୀଳିମା ତଳେ ଶତ ଶତ ବିହଙ୍ଗ ଉଡ଼ି ଯାଉଥିଲେ ସ୍ୱ ସ୍ୱ ନୀଡ଼କୁ । ସେମାନଙ୍କ ଆଡ଼କୁ ଚାହିଁ ରଘୁନାଥ ଭାବିଲା, "ଏମାନଙ୍କର ଆଶ୍ରା ଅଛି । ବିଶ୍ୱପିତା ସମସ୍ତଙ୍କର ଜୀବନ ଲାଗି ସଂସ୍ଥାନ କରି ଦେଇଛନ୍ତି । ତେବେ ରଘୁନାଥ ପାଇଁ ସେ କଣ କୌଣସି ସଂସ୍ଥାନ କରି ନ ଥିବେ ? ଏତେ ବର୍ଷ ସେ ଯାହାଙ୍କର ଶ୍ରୀଚରଣ ତଳେ କାଟିଛି, ଯେ ତାଙ୍କୁ ଧନ ଐଶ୍ୱର୍ଯ୍ୟ ସୁଖ ଶାନ୍ତି ଚିନ୍ତା ପରିବାର ସବୁ ଦେଇଛନ୍ତି, ସେ କଣ ଏହି ମୁହୂର୍ତ୍ତରେ ତାକୁ ତ୍ୟାଗ କରିବେ ? ହଁ, ମାୟାକୁ ହରାଇ ସେ ଉନ୍ମାଦ । ସୀତାଠାରୁ ଉପେକ୍ଷିତ ହୋଇ ସେ ହତାଶ। ଦୁଇ ଜଣ ତାର ଆପଣାର ଲୋକ ତାକୁ ତ୍ୟାଗ କଲେ. ସେ କାହାକୁ ଘେନି ଆଉ ବଞ୍ଚିବ ? ଜୀବନ ଯେ ଲକ୍ଷ୍ୟଶୂନ୍ୟ ।" ତାର ପୁଅ ଦୁଇଟିଙ୍କ ମୁହଁ ମନେ ପଡ଼ିଲା, ଝିଅ ଦୁହିଙ୍କର କୋମଳ କାନ୍ତି ଆଖି ଆଗରେ ନାଚି ଉଠିଲା; କିନ୍ତୁ ତାଙ୍କ ପାଇଁ ସେ ଅଧିକ କଣ କରିବ ? ଅତୁଳ ସମ୍ପତ୍ତିର ଅଧିକାରୀ ସେମାନେ । ତାଙ୍କ ପାଇଁ ତାର ଭାବିବାର ପ୍ରୟୋଜନ ନ ଥିଲା । ମାୟାର ମୃତ୍ୟୁ ପରେ ଆଉ ତାର କାର୍ଯ୍ୟରେ ମନ ନାହିଁ । କର୍ମ କଲେ କୋହ ଉଠୁଛି । କାହିଁକି, କାହାପାଇଁ ଆଉ ସେ ଜୀବନ ଧାରଣ କରିବ ? ଆଜି ଲଛମନର କଥାରେ ତାର ଆଖି ଆଗରେ ସହସା ଗୋଟିଏ ନବୀନ କର୍ମକ୍ଷେତ୍ର ଦେଖା ଦେଲା । ସେ ତନ୍ମୟ ହୋଇ ଭାବିଲା—'ଦେଶମାତାର ସେବା ସେ କରିବ । କାହିଁକି ନ କରିବ ?' କିଛିକ୍ଷଣ ପରେ କହିଲା—"ଭାଇ ! ତୁମର କଥା ଠିକ୍ । ଦେଶମାତାର ଶ୍ରୀପଦ ତଳେ ମୋର ଶାନ୍ତି ହେବ ଦେଖି । ଭଗବାନ୍ ଏହି ଯୋଗୁଁ ମତେ ଏତେ କଷ୍ଟ, ଏତେ ଦୁଃଖ ଦେଇ ଏ ଅବସ୍ଥାକୁ ଆଣିଛନ୍ତି ପରା ! ତୁମେ ମୋ ଲାଗି ପ୍ରାର୍ଥନା କର ଭାଇ ! ମୁଁ ଦେଶମାତାର ଯୋଗ୍ୟ ସେବକ ହେବି ।" ଲଛମନ୍ ପୂର୍ଣ୍ଣପ୍ରାଣରେ କହିଲେ—"ତଥାସ୍ତୁ ।"

ବକୁଳ ବୃକ୍ଷର ବିସ୍ତୃତ ଛାୟାତଳେ ପରିଷ୍କାର ପରିଚ୍ଛନ୍ନ ପ୍ରାଙ୍ଗଣ, ଏଇଠ ବସି ଦୁଇ ପ୍ରହର ସମୟରେ ମାୟା ଓ ମୀରା କଥାଭାଷା ହେଉଥିଲେ, ଏଇଠି ବସି ଲୁକା ଓ ମୀରା ଖେଳେଇ କରନ୍ତି, ପୋଥି ପଢ଼ନ୍ତି. ପୁଣି ଲଛମନ ସଙ୍ଗୀ ଦଳଙ୍କୁ ଘେନି ବୈଠକ କରନ୍ତି । ଆଜି ସେହିପରି ଗୋଟିଏ ସାନ୍ଧ୍ୟ ବୈଠକ । ଲଛମନ ବଡ଼ ସଙ୍ଗୀତପ୍ରିୟ । ସେ ହାରମୋନିୟମରେ ଗୀତ ଗାଉଛନ୍ତି, ପ୍ରଫୁଲ୍ଲଚିତ୍ତରେ ଶୁଣୁଛି ରଘୁନାଥ । ରଘୁନାଥ ଦେଶସେବା ବ୍ରତଧାରଣ କରିଛି. ତାର ଜୀବନରେ ମହା ପରିବର୍ତ୍ତନ ଘଟିଛି । ଲଛମନର ଗୀତ ସାଙ୍ଗ ହେଲା ପରେ ସେ ମଧ୍ୟ ଗୋଟିଏ ଗୀତ ଗାଇଲା । ତାର ଗୀତ ଓଡ଼ିଆ, ମଧୁର ଓଡ଼ିଶୀ ରାଗିଣୀରେ ରଘୁନାଥ ଗାଇଲା—

ଜୟ ମା, ନୀଳାଚଳ ପଞ୍ଚଲେ
ଜୟ ମା ଚିଲିକା-ନୀଳ-କଲ୍ଲୋଳଚଞ୍ଚଲେ !
ପତିତ ତୋହୋର ସନ୍ତାନ ଉତ୍ପଳ-ଚରଣ ରେଣୁ ଦେ ମା ଶିରେ
ତର୍ପଣ ମୁହିଁ କରିବ ଯେସନ ଶ୍ରୀପଦ ଚପଳ ରୁଧିରେ ।
ଭକ୍ତେ ଦେ ମା ଭରି ଅଜେୟ ବିକ୍ରମ,
ହୃଦରନ୍ଧେ ବାଜୁ ବନ୍ଦେ ମାତରମ୍,
ଯାଏ ଯଥାତଥା, ରହୁ ମୋର ମଥା
ନତ ଶ୍ରୀପଦ୍ମରେ ସର୍ବମଙ୍ଗଳେ ।

ସମବେତ ସମସ୍ତେ ତାହାର ମନୋହର କଣ୍ଠସ୍ୱରରେ ମୁଗ୍ଧ ହେଲେ । ଲକ୍ଷ୍ମଣ ପ୍ରାଣ୍ଟୁନେଜରେ କହିଲେ—"ରଘୁନାଥ 'ହିନ୍ଦୁସ୍ଥାନଙ୍କ ସମାଚାର' ଅଫିସରେ ଏଠି କାମ କରିବା ତୁମ୍ଭଙ୍କୁ ଶୋଭା ପାଉ ନାହିଁ । ଫେରି ଯାଅ ତୁମେ ସେହି ନୀଳାଚଳ ଅଞ୍ଚଳ ପୁଣ୍ୟ ଜନ୍ମଭୂମିକୁ, ସେହି ତୁମର ମା, ସେହି ତୁମର ସେବା ପାଇବାର ଯୋଗ୍ୟ । ତାହାର ଦୁଃଖ ଦୁର୍ଦ୍ଦଶା ଦୂର କରିବା ତୁମର ଆସଲ କର୍ତ୍ତବ୍ୟ ।"

ଅବଦୁଲ୍ ଅଜିଜ୍ କହିଲେ—"ଭାଇ ଲକ୍ଷ୍ମଣ ଯାହା କହୁଛନ୍ତି ସତ କଥା । ତୁମର ଦେଶ ତୁମକୁ ଡାକୁଛି, ଏଠି ଅନେକ କର୍ମୀ, ଏଠି ଅନେକେ ଦେଶ ଲାଗି ସର୍ବସ୍ୱ ପଣ କରି ବସିଛନ୍ତି । ତୁମେ ସେହି ଦରିଦ୍ର ଓଡ଼ିଶାକୁ ଫେରିଯାଅ । ନିଜ ମା କଥା ଆଗ ଭାବ ।"

ରଘୁନାଥ କହିଲା—"ଭାଇ ! ତୁମମାନଙ୍କ ସାଙ୍ଗ ଛାଡ଼ିବାକୁ ମୋର ଇଚ୍ଛା ହେଉ ନାହିଁ । ତୁମମାନଙ୍କର ପବିତ୍ର ଆଦର୍ଶରୁ ଚ୍ୟୁତ ହେବାକୁ ମୋର ସାହସ ନାହିଁ ।"

ଲକ୍ଷ୍ମଣ କହିଲେ—"ଆମ୍ଭେମାନେ ନିଖିଳଭାରତର କର୍ମୀ ଦଳ, ଆସମୁଦ୍ର ହିମାଚଳ ଆମ୍ଭମାନଙ୍କର କର୍ମଭୂମି, ତୁମେ ଓଡ଼ିଶାର ଲୋକ, ତାହାର ଅବସ୍ଥା, ତାହାର ଦୁଃଖ ଦୁର୍ଦ୍ଦଶା ତୁମେ ଆମଠୁଁ ଭଲ ଜାଣ, ସେଇଠି ଯାଇ କାମ କର । ଆମର ଗୋଟିଏ ମହାଙ୍ଗ ହେଉ ।"

ତାରକନାଥ କହିଲେ—"ଦେଶ ଦେଶ ଜାତି ଜାତି ମଧ୍ୟରେ ଦ୍ୱନ୍ଦ୍ୱର ପକ୍ଷପାତୀ ମୁଁ ନୁହେଁ । ଦେହର ଗୋଟିଏ ଅଙ୍ଗର କ୍ଷୋଭାର ହେଲେ ଅନ୍ୟ ଅଙ୍ଗକୁ ବାଧେ ନାହିଁ କି ? ମୁଁ ଓଡ଼ିଶାର ଦଶା ସ୍ୱଚକ୍ଷୁରେ ଦେଖିଛି । ଯେଉଁ ଦେଶରେ ଦିନେ କଳିଙ୍ଗ ସମ୍ରାଟ ଖାରବେଳ ଭାରତର ଚକ୍ରବର୍ତ୍ତୀ ହୋଇଥିଲେ, ଯେଉଁ

ଉତ୍କଳରେ ଆଜସୁଦ୍ଧା ଜଗନ୍ନାଥ ଦେବଙ୍କର ପବିତ୍ର ମନ୍ଦିର ସମ୍ମୁଖରେ ପ୍ରତ୍ୟେକ ହିନ୍ଦୁସ୍ଥାନବାସୀ ଜାଣନ୍ତି, ସେ ଦେଶ ହେଉଛି କୁଲିଙ୍କ ଦେଶ । ସେ ଦେଶର ଲୋକଙ୍କୁ ଅନ୍ୟାନ୍ୟ ଦେଶର ଲୋକେ ନିତାନ୍ତ ଘୃଣା କରନ୍ତି !"

କଥାଟା ରଘୁନାଥର ମର୍ମ ସ୍ପର୍ଶ କଲା । ସତ କଥା, ତା' ଦେଶକୁ ସମସ୍ତେ ଅବଜ୍ଞା କରନ୍ତି, ଏହା ସେ ନିଜେ ଜାଣେ । ରେଙ୍ଗୁନ୍‌ରେ ଓଡ଼ିଆମାନେ କୁଲିଗିରି କରନ୍ତି, ସେଥିପାଇଁ ସେଠି ଓଡ଼ିଆର କୁଲିଠୁଁ ବଳି ସମ୍ମାନ ନାହିଁ । କଲିକତାରେ ଓଡ଼ିଆଙ୍କୁ ବଙ୍ଗାଳିମାନେ ଠାପରା କରି ଅନେକ କଥା କହନ୍ତି । ଏପରି ଦୁର୍ନାମ—ଏପରି ଜାତୀୟ କଳଙ୍କ କଣ କେବେ ହେଲେ ଦୂର ହେବ ନାହିଁ ? ତାହାର ମାତୃଭୂମି କଣ ସର୍ବଦା ମ୍ଳାନ ଅବସ୍ଥାରେ ରହିଥିବ ? ତା ହୃଦୟରେ ଚିରକାଳ ଓଡ଼ିଶା ପ୍ରତି ଗଭୀର ଅନୁରାଗ ଥିଲା । କର୍ମପର୍ଯ୍ୟଟନରେ ସେ ବହୁତ ଦେଶ ବୁଲିଛି । ବହୁତ ଭିନ୍ନ ଭିନ୍ନ ଜାତିର ଲୋକଙ୍କ ସହିତ କାରବାର କରିଛି; କିନ୍ତୁ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ କଦାପି ସେ କୁଣ୍ଠିତ ହୋଇ ନାହିଁ । ତାହାର ମାତୃଭୂମିକୁ ସେ ଅତ୍ୟନ୍ତ ଭଲ ପାଏ ।

ପରଦିନ ହଠାତ୍ କେଦାର ବାବୁଙ୍କର ଗୋଟିଏ ଟେଲିଗ୍ରାମ୍ ଆସିଲା । ରଘୁନାଥ ବ୍ୟସ୍ତ ହୋଇ କଲିକତା ଯାତ୍ରା କଲା । କେଦାର ବାବୁ ତାଙ୍କୁ ପୁଣି ବର୍ମା ଯିବାକୁ ଅନୁରୋଧ କଲେ । ବୈଠକଖାନାରେ ଏକାକୀ ଶ୍ୱଶୁର ଜୁଆଁଇ ବସିଥିଲେ । ଶ୍ୱଶୁର କହିଲେ—"ବାପା ! ତୁମେ କିପାଁ ବାୟା ମନ ଧରିଛ ? ଯାହା ହେବାର ହେଲାଣି । ତୁମର ଇଚ୍ଛା ତ ଦ୍ୱିତୀୟ ସଂସାର କର । ମୋର ଝିଆରି ଲତିକାକୁ ବିବାହ କର । ପିଲାମାନଙ୍କୁ ଧରି ସୁଖରେ ରହ, କାହିଁକି ଏଣେ ତେଣେ ପଳାଇ ଯାଉଛ ?"

ରଘୁନାଥ ନତବଦନରେ କହିଲା—"ପିତଃ ! ମୁଁ ସମ୍ପତ୍ତିଲୋଭୀ ନୁହେଁ । ଯାହା ଲାଗି ସମ୍ପତ୍ତି, ସେ ସେତେବେଳେ ମୋର ଯାଇଛି, ଆଉ କଣ ପାଇଁ ସେ ଦେଶକୁ ଫେରିଯିବି ? ଆଉ ଦ୍ୱିତୀୟ ବିବାହରେ ମୋର ଇଚ୍ଛା ନାହିଁ । ଲତିକା ମୋର ଭଉଣୀ ?"

"ମୁଁ ଜାଣେ ବାପ ତୁମେ ଜଳୁଛ । କିନ୍ତୁ ଏହି ବୁଢାଟିଙ୍କ ମୁହଁକୁ ଅନାଇବ ନାହିଁ ?"

ରଘୁନାଥ ଛଳଛଳ ଆଖିରେ କହିଲା—"ଆପଣଙ୍କ ପାଦରେ ଭକ୍ତି ତ ମୋର ସୁଖରେ ଅଛନ୍ତି । ଆପଣଙ୍କ କଲ୍ୟାଣରେ ମୋର ନିର୍ମଳ, ରବିପ୍ରଭ ତ ମଣିଷ ହୋଇ ବର୍ମା ଅଏଲ୍ କମ୍ପାନୀର ଭାର ନେବେ; କିନ୍ତୁ ଆଉ ମୋତେ ସଂସାର ମାୟାବନ୍ଧନରେ ବାନ୍ଧନ୍ତୁ ନାହିଁ । ଏଥର ମୁଁ ସର୍ବତ୍ୟାଗୀ ହୋଇଛି, ଲକ୍ଷ୍ମଣ ଭାଇର ସଙ୍ଗ ନେଇଛି ।"

କେବଳ ବାବୁ କିଛିକ୍ଷଣ ନୀରବ ହୋଇ ରହିଲେ । ପରେ ଦୁଃଖିତ କଣ୍ଠରେ କହିଲେ—"ରଘୁନାଥ ! ପୁଅ ! କର୍ମ ସମ୍ପତ୍ତି ତୁମର । ତୁମେ ବୁଝ, ତୁମେ ଯାହା ଇଚ୍ଛା ତା କର; କିନ୍ତୁ ତୁମର ମହତ୍ ଲକ୍ଷ୍ୟରେ ମୁଁ ବାଧା ଦେବ ନାହିଁ । ମୁଁ ଜାଣେ ତୁମେ ଲଛମନଠାରୁ କି ଦୀକ୍ଷା ନେଇଛ । ମୋହୋର ଭୟ ବାସ୍ତବରେ ପରିଣତ ହୋଇଛି ।"

ରଘୁନାଥ ଧୀରସ୍ୱରରେ କହିଲା—"ଦେଶସେବାରେ ଭୟ କଣ ବାବା ?"

କେବଳ ବାବୁ କହିଲେ—"ଜାଣ, ଲଛମନ କେତେ ଥର ଜେଲ୍ ଯାଇଛି ? ତାହାର ପ୍ରାଣନାଶ କରିବାକୁ ଲୋକେ ଗୋଡ଼େ ଗୋଡ଼େ ଜଗି ରହିଛନ୍ତି । ସେ ରାଜଦ୍ରୋହୀ ବୋଲି ସବୁଆଡ଼େ ପ୍ରଚାରିତ ।"

"କିନ୍ତୁ ବାବା ! ସେତେ ବଡ଼ ତେଜସ୍ୱୀ ପୁରୁଷ ନ ହୋଇ ଥିଲେ କଣ ସେ ଏତେ ନିର୍ଯ୍ୟାତନ ସହନ୍ତେ ?"

କେବଳ ବାବୁ କହିଲେ—"ସେ ପୁରୁଷସିଂହ, ଆମ୍ଭେମାନେ ଭୀରୁ, ଅକର୍ମଣ୍ୟ ! ହେଉ, ମୁଁ ଆଶୀର୍ବାଦ କରୁଛି, ତୁମର ଜୀବନନିର୍ବାଚିତ ପଥରେ ଯଶସ୍ୱୀ ହୁଅ ।"

ଜୁଆଇଁର କଥା ଶୁଣି ସୁଧାମୟୀ ବଡ଼ ଦୁଃଖିତ ହୋଇ ସ୍ୱାମୀଙ୍କୁ କହିଲେ—"ପିଲାଟା ବଡ଼ ଖିଆଲିଆ, ତୁମେ ତାକୁ ବାରଣ କଲ ନାହିଁ ?"

କେବଳ ବାବୁ କହିଲେ—"ସେ ମହାଧର୍ମର ବ୍ରତ ନେଇଛି, ମୁଁ କାହିଁକି ବାରଣ କରି ପାପଭାଗୀ ହେବି ? ଦେଶସେବାଠୁଁ ବଳି ଆଉ କଣ ଧର୍ମ ଅଛି ?"

"ତାହାର ସେ ଯେ ରାଜଦ୍ରୋହୀ ହେବ ।"

"ଦେଶସେବା କଲେ ମାତ୍ରେ କଣ ରାଜଦ୍ରୋହୀ ହୁଅନ୍ତି ?"

"କିନ୍ତୁ ମୋର ବଡ଼ ଭୟ, ସେ ଲଛମନ ପରି ଜେଲ ନ ଯାଉ ।"

"ଦେଶ ଲାଗି କାରାବରଣ ଯେ ଗୌରବ ।"

ତାଙ୍କର କଥା ଶେଷ ନ ହେଉଣୁ ଆର ଘରୁ ଗୀତର ମଧୁର ଲହରୀ ଭାସି ଆସିଲା । ଅର୍ଗାନ୍‌ରେ ଗୀତ ଗାଉଥିଲା ଆଜି ମିନତି । ମିନତିର କଣ୍ଠସ୍ୱର ବାପ କଣ୍ଠ ପରି ଅତି ମଧୁର । ରଘୁନାଥ ତାକୁ ନିଜର ମାତୃଭାଷା ଶିକ୍ଷା ଦେଇଥିଲା । ତାହାର ସ୍ୱରଚିତ ଗୀତ କେତୋଟି ସେ କନ୍ୟା ମୁଖରୁ ଶୁଣିବାକୁ ବଡ଼ ଭଲ ପାଏ । ମିନତି ରଘୁନାଥର ଆଦେଶରେ ଗାଇଲା :—

ସୁନ୍ଦର, ସୁନ୍ଦର, ସୁନ୍ଦର !
ଅତିସୁନ୍ଦର ତୋର ଶ୍ରୀପପୁର !

ପଦପଙ୍କଜର କିଙ୍କର ବୋଲି
ଦୂରେ ଦୂରର ମୋତେ ନ ଦିଅ ହେ ଠେଲି,
ତୋର କୋଟିଏ ସନ୍ତାନ ମଧ୍ୟେ ମୁଁ ଗୋଟିଏ ଅଧମ ସେବକ ତୋହର ।
କଳଙ୍କ ତୋ ଲାଗି ସେ ମୋର ଭୂଷଣ,
ଦିଅ ବକ୍ଷେ ଥୋଇ ପବିତ୍ର ଚରଣ,
ରାମ, କୃଷ୍ଣାର୍ଜୁନ ଯା ସେବାଭାଜନ ସେ ଚିର ସମ୍ପଦ ମୋହର ।
ଚିର ସୁନ୍ଦର ତୋର ଶ୍ରୀପଦ୍ମର ।

କେବଳ ବାବୁ ନାତୁଣୀର ଅପୂର୍ବ କଣ୍ଠରେ ମୋହିତ ହୋଇ କହିଲେ—"ଅମିମା, ଏ ବାପ ଝିଅ ଦୋହିଁଯାକ ଏଥର ଦେଶ ଉଦ୍ଧାର କରି ପକାଇବେ । ମିନତି କେଡ଼େ ଓଡ଼ିଆଣୀ ! କେଡ଼େ ସୁନ୍ଦର ଓଡ଼ିଆ ଗୀତ ଗାଉଛି !" ନିର୍ମଳ ଆସି ଅଜା ପିଠିରେ ଲଦି ହେଲା । ଅଜା ରହସ୍ୟ କରି କହିଲେ—"ତୁ ଓଡ଼ିଆ କି ରେ !"

ନିର୍ମଳ ଗର୍ବରେ କହିଲା—"ମୋର ବାପା ଓଡ଼ିଆ, ଆଉ ମୁଁ କଣ ଓଡ଼ିଆ ନୁହେଁ ?"

ଅଜା ଆଈକୁ ଦେଖେଇ କହିଲେ—"ଦେଖିଲ ନମକହରାମ ନାତିକୁ ?"

ଆଈ କହିଲେ—"ସେ ପ୍ରକୃତରେ ପିତୃଭକ୍ତ ସନ୍ତାନ ।"

ନାତି ପିଠିରେ ଗେଲରେ ଧୀର ଚାପୁଡ଼ାଟିଏ ଥୋଇ ଅଜା ବାହାରକୁ ଗଲେ । ଆଈ କହିଲେ—"ନିର୍ମଳ ! ତତେ ଏତେ କଥା କିଏ ଶିଖେଇଲା କି ରେ ?" ନିର୍ମଳ ଅଶ୍ରୁପୂର୍ଣ୍ଣ ଲୋଚନରେ କହିଲା—"କାହିଁକି, ମା କହେ, ଆମେ ଓଡ଼ିଆ, ଆମ ଗୋସିଁ ବାପା ଗୋସିଁମା ଘରକୁ ଯାଉଥିଲୁଁ । ସେମାନେ ଓଡ଼ିଆ କହନ୍ତି । ଆଈମା ! ମୁଁ କଣକି ପୁଣି ଝିଅ ? ସେମାନେ ମତେ ଖୁବ ସ୍ନେହ କରନ୍ତି ।"

ସୁଧାମୟୀ କନ୍ୟା ଚିନ୍ତାରେ ବ୍ୟଥିତା ହୋଇଥିଲେ, ଆଉ କିଛି ଉତ୍ତର ଦେଇ ପାରିଲେ ନାହିଁ ।

ରଘୁନାଥ ସେତେବେଳେ ଦାଣ୍ଡଘରେ କାନ୍ଥରେ ଗୋଟିଏ ଅଏଲ୍ ପେଣ୍ଟିଂକୁ ଚାହିଁଥିଲା । ମନୋହର ଚିତ୍ର, ସେ ବର୍ମାରୁ ତିଆରି କରି ଆଣିଥିଲା । ଅଏଲ୍ ପେଣ୍ଟିଂରେ ଚିତ୍ରିତ ହୋଇଥିଲେ ମାୟା ଓ ରଘୁନାଥ; ଆଉ ସୁଦୃଷ୍ଟ ଶିଶୁ । ଚିତ୍ରର ଅଦ୍ଭୁତ କୌଶଳରେ ସମସ୍ତେ ଜୀବନ୍ତପରି ଦିଶୁଥିଲେ । ରଘୁନାଥ ଅନେକକ୍ଷଣ ଚାହିଁଲା ମାୟାର ମୂର୍ତ୍ତିକୁ । ଅଏଲ୍ ପେଣ୍ଟିଂରେ ସୁଦ୍ଧା ତାର ଅଧର-ପଲ୍ଲବରେ ଈଷତ୍ ହାସ୍ୟରେଖା ସ୍ପଷ୍ଟ ଥିଲା । ତାହାର ନୟନ ଦୁଇ ପ୍ରେମ-

କ୍ରୋଡରେ ଉନ୍ମୁକ୍ତ । ସେହି ଅପୂର୍ବ ସୁନ୍ଦର ପ୍ରେମମୟ ପ୍ରତିରୂପ ମଧ୍ୟରେ ରଘୁନାଥ ଦେଖିଲା ତାହାର ଆତ୍ମାକୁ । ଆଜିସୁଦ୍ଧା ମାୟା ଜୀବିତ, ତାର ଅନ୍ତରସ୍ଥରେ ମାୟା ଜୀବିତ, ତାର ପ୍ରତ୍ୟେକ ରକ୍ତବିନ୍ଦୁରେ ମାୟାର ନାମ । କ୍ଷଣିକ ମୋହରେ ସେ ଯେଉଁ ସୀତାକୁ ବିଭା ହେବାକୁ ଯାଇଥିଲା, ମାତ୍ର ମାୟାହିଁ ତାହାର ପ୍ରକୃତ ସହଧର୍ମିଣୀ, ତାହାର ସହକର୍ମିଣୀ, ତାର ଜୀବନତରୁ-ଆଶ୍ରିତା ପ୍ରେମ-ଲତିକା । ବାରବର୍ଷ କାଳ ସେ ତାର ଘର କରିଥିଲା ପରମ ଯତ୍ନରେ—ବାର ବର୍ଷକାଳ ତାକୁ ଭୁଲାଇ ରଖିଥିଲା ପରମ ପ୍ରେମରେ, କିନ୍ତୁ କ୍ରୂର କାଳକୀଟ ଆସି ତାର ଜୀବନ-ଉଦ୍ୟାନର ଅପୂର୍ବ ଗୋଲାପ ଫୁଲର ଡେମ୍ଫ କାଟିଦେଲା । ରଘୁନାଥ ଏକା ହେଲା, ବାୟା ହେଲା । ମାତ୍ର ଆଉ ନୁହେଁ । ଏଥର ମାୟାର ନାମ ମନ୍ତ୍ର ଜପ କରି ସେ ଦେଶସେବାରେ ଲାଗିବ । ମାୟାର ମୋହନ ମୂର୍ତ୍ତି ହେବ ତାର ଜୀବନର ସଙ୍ଗିନୀ ।

ରଘୁନାଥ ପୁଣି ପ୍ରେମ ଭରା ଫୋଟୋଟି କୋଟ ପକେଟରୁ କାଢ଼ିଲା । ନୀରବ ନିଭୃତରେ ବସି ତାକୁ ଶତଶତ ଚୁମ୍ବନ କରି ଅଶ୍ରୁ-ଜଳରେ ଅଭିଷିକ୍ତ କଲା । ଆଜି ତାର ମନେ ହେଲା, ଯଦିଓ ବିବାହ ବନ୍ଧନରେ ସେ ତାର ସହଧର୍ମିଣୀ ହୋଇଥିଲା ସେହି ତାହାର ସ୍ତ୍ରୀ । ସେ ସୀତାକୁ କେବଳ କ୍ଷଣିକ ଉତ୍ତେଜନାରେ ବିଭା ହେବାକୁ ଯାଇଥିଲା । ସୀତାର ଶେଷ କଥା ତାର ମନେ ପଡ଼ିଲା । ତାର ତେଜୋମୟୀ ମୂର୍ତ୍ତି ଭିତରେ ଦେଖିଲା ସୀତା ତାର ନୁହେଁ, ସୀତା ଦିବାକରର । ମାୟା ପ୍ରତି ବିଦ୍ରୋହୀ ହୋଇ ସେ ଯେ ସୀତାକୁ ବରଣ କରିବାକୁ ଯାଇଥିଲା, ଏ ଲଜ୍ଜାରେ ତାର ଅନ୍ତର ବ୍ୟାକୁଳ ହୋଇ ଉଠିଲା । ସେ ନତଜାନୁ ହୋଇ ପରଲୋକଗତା ମାୟା ନିକଟରେ ବାରଂବାର କ୍ଷମା ପ୍ରାର୍ଥନା କଲା ।

ମନ ତାର କହିଲା, ମୂର୍ଖ ! ସୀତା କିଏ ! ମାୟା କିଏ ! ଗୋଟିଏ ପ୍ରେମର ଦୁଇଟି ଛବି ! ଅନନ୍ତ ପ୍ରେମରେ ଜଗତ୍ ଭରା । ସେହି ପ୍ରେମର ଦୁଇଟି ବିକାଶ ! ଯେ ଆଲୋକ ଭଲ ପାଏ, ସେ କଣ ଅନ୍ଧକାର ଭଲ ପାଏ ନାହିଁ ? ଯେ ହସେ, ସେ କଣ କାନ୍ଦେ ନାହିଁ ? ସୀତା ଓ ମାୟା ତୋର ଦୁଇଟି ପ୍ରକୃତି, ଗୋଟିଏ ଆନନ୍ଦମୟୀ, ଅପରଟି ବିଷାଦମୟୀ । ଗୋଟିଏ ପୂର୍ଣ୍ଣିମାଚନ୍ଦ୍ରର ମଧୁର କିରଣ—ଅନ୍ୟଟି ଅମାନିଶୀଥିନୀର ଦୁର୍ଭେଦ୍ୟ ତମିସ୍ରା ! ଦୁଇଟି ତୋର, କାହାରିକୁ ଭୁଲିବାକୁ ଚେଷ୍ଟା କର ନା । ଦୁଇଜଣଙ୍କ ସ୍ମୃତି ହୃଦୟରେ ରଖି ସଂକର୍ମ ପ୍ରବାହରେ ଜୀବନ ଭସାଇ ଦେ ।

ରଘୁନାଥ ମନର କଥା ମାନିଲା । ସେହିଦିନଠୁଁ ସେ ସୀତା ଓ ମାୟା ଉଭୟଙ୍କ ପବିତ୍ର ସ୍ମୃତି ଧ୍ୟାନ କରି ଜୀବନ କାଟିଲା । କୁଆଡ଼େ ଗଲା, କଣ କଲା,

ଆଉ କେହି ତାର ଖବର ପାଇଲେ ନାହିଁ । ଅନେକେ ଅନେକ କଥା କହନ୍ତି, ହେଲେ ଆମେ ଜାଣୁ ସେ ଅଦ୍ୟାପି ଜୀବିତ ।

କିନ୍ତୁ ସୀତାର କଣ ହେଲା ?

× × × ×

ତୁଳସୀପୁର ସେ ମୁଣ୍ଡକୁ ଉଦଗା ପଡ଼ିଆରେ ଦେଉଳସାହି ଯିବା ବାଟ ଉପରେ ଧାଡ଼ି ଧାଡ଼ି କେତୋଟି କୁଳ ଘର ଅଛି । ସେଥିର ଦାଣ୍ଡକୁ ଗୋଟିଏ ଖଣ୍ଡ ପୋତା ହୋଇ କାଳିଆ ପଟାରେ ବଡ଼ ବଡ଼ ଅକ୍ଷରରେ ଲେଖା ରହିଛି —

"ମାନବେ ନ ମଣିବ ସାନ,
ମାନବ ଦେବତା ସମାନ ।
ଜାତି ଅଜାତି ଭେଦ ନାହିଁ
ବ୍ରାହ୍ମଣ ନିଜ ସ୍ୱାର୍ଥ ପାଇଁ
ରଚିଛି ସକଳ ବିଧାନ,
ଚିନ୍ତ ସୁଧୀରେ ଜ୍ଞାନବାନ ।"

ଏ ପଦ୍ୟ ତଳେ ବଡ଼ ମୋଟ ମୋଟ ଅକ୍ଷରରେ ଲେଖା ଅଛି—

# ଜଗନ୍ନାଥ କୁଟୀର

ତା ତଳେ ଧାଡ଼ିଏ ସାନ ଅକ୍ଷର

'ସମସ୍ତଙ୍କ ଲାଗି ଅବାରିତ ଦ୍ୱାର ।'

ଏହି ଜଗନ୍ନାଥକୁଟୀରରେ ଅନେକ ବର୍ଷ ହେଲା ରହିଛନ୍ତି ଜଗନ୍ନାଥ, ତାରାମଣି ସୀତା ଓ ପିତେଇ ନାନା । ଚନ୍ଦ୍ରଶେଖର ଚଉଧୁରୀଙ୍କର କାଳ ଅନ୍ତେ ଭାଇ ଭାଉଜଙ୍କ ଅତ୍ୟାଚାରର ସହି ନ ପାରି ସୀତା ଜଗନ୍ନାଥ ମଉସାଙ୍କ ଆଶ୍ରୟରେ ଆସି ରହିଲା । ପିତେଇ ବୁଢ଼ୀ ମଧ୍ୟ ତା ସଙ୍ଗ ଧରିଲା । ସେହିଦିନଠାରୁ ସୀତା ଜୀବନରେ ମହାପରିବର୍ତ୍ତନ ଘଟିଲା । ଜଗନ୍ନାଥଙ୍କ ଶିକ୍ଷା ଫଳରେ ସୀତା ପୂର୍ବର କୁସଂସ୍କାର ଭୁଲି ନିଖିଳ-ସେବାରେ ପ୍ରାଣ ଆତ୍ମା ଢାଳି ଦେଲା । ସେ ଭଲ ଓଡ଼ିଆ ବଙ୍ଗଳା ଜାଣେ । ଜଗନ୍ନାଥ ତୁଳସୀପୁର 'ବାଉଁଶ ସାହି', 'ଚଢ଼େଇମାର ସାହି', 'କାଫଲ ବଜାର' 'ପାଣ ସାହି', 'ହାଡ଼ି ଗାଡ଼ିଆ' ଓ 'ଅଲିଶା ବଜାର'

ହାଡ଼ୀସାହିର ପିଲାଙ୍କପାଇଁ ଗୋଟିଏ ଚାଟଶାଳୀ ଖୋଲିଛନ୍ତି। ସେଥିରେ ଶିକ୍ଷୟିତ୍ରୀ ହୋଇଛନ୍ତି ସୀତା। ପିଲାଙ୍କୁ ବେତନ ଦେବାକୁ ପଡ଼େ ନାହିଁ। ସିଲଟ୍ ବହି କିଣିବାକୁ ପଡ଼େ ନାହିଁ। ମାଗଣାରେ ଆସି ପଢ଼ି ଯାଆନ୍ତି। ସରକାରୀ ପରୀକ୍ଷା ହୁଏ ନାହିଁ; କିନ୍ତୁ ଭଲରୂପେ ମାତୃଭାଷା ପଢ଼ି ପାରିଲେ, ମାନସାଙ୍କ, ବଜାର ପ୍ରଚଳିତ ହିସାବଟା କରି ଶିଖିଲେ ପାଠ ଶେଷ ହୁଏ। ସନ୍ଧ୍ୟାବେଳେ ବୟସ୍କା ସ୍ତ୍ରୀମାନେ ସୁଦ୍ଧା ଆସି ସୀତା ଓ ଠାକୁରମଣି ନିକଟରେ ପାଠ ପଢ଼ନ୍ତି, ପୋଥି ବୋଲା ଶୁଣନ୍ତି।

ଜଗନ୍ନାଥ ନିଜର ସୁନ୍ଦର କୋଠାଘରଟି ବିକି ଦେଇ ଏ କୁଟୀର ତୋଳିଛନ୍ତି। ଶେଷ ଜୀବନରେ ବାନପ୍ରସ୍ଥ ଆଶ୍ରମର ସୁଖ ଅନୁଭବ କରିବା ତାଙ୍କର ଉଦ୍ଦେଶ୍ୟ। ଜମି ଦୁଇବାଟିର ଧାନରେ ବର୍ଷକ ସୁଖରେ ଚଳେ। ବିସ୍ତୃତ ବାଡ଼ି [illegible] କଷ୍ଟ ହୁଏ ନାହିଁ। ପରିବାରଟି ନିରାମିଷଭୋଜୀ, ଗୈରିକଧାରୀ, ଆଉ ବୈଷ୍ଣବଧର୍ମରେ ଦୀକ୍ଷିତ। ନଦୀୟାର ଶ୍ରୀଗୌରାଙ୍ଗ ଯେଉଁ ପ୍ରେମପ୍ଲାବନରେ ଉତ୍କଳ ଭସାଇଥିଲେ, ସେହି ପବିତ୍ର ପ୍ରେମପ୍ରବାହରେ ସମସ୍ତେ ମଗ୍ନ।

‘ରୂପେଇ’ ଗୋଲକନାଥ ମହାରଣା ନାମକ ନଢ଼େଇ ଟୋକାକୁ ବିବାହ କରି ଉଭୟେ ଏହି ଆଶ୍ରମରେ ରହିଛନ୍ତି। ରୂପେଇ ପାକଶାଳାର କର୍ତ୍ତ୍ରୀ, ଆଉ ଗୋଲକ ବାଡ଼ି ବଗିଚାର ମାଲି। ‘ବାରଜାତି ତେର ଗୋତ୍ର, ବୈଷ୍ଣବ ହେଲେ ସବୁ ଗଳ’’ ଏ କଥାର ସାର୍ଥକତା କରି ଏ ପରିବାର ତାଙ୍କର କ୍ଷୁଦ୍ର ଚେଷ୍ଟାରେ ଲାଗିଛନ୍ତି ସମାଜସଂସ୍କାର ପାଇଁ। ଏମାନଙ୍କୁ ଛାଡ଼ି ଆଶ୍ରମରେ ଆହୁରି କେତୋଟି ପ୍ରାଣୀ ଥିଲେ। ସେମାନେ ସମସ୍ତେ ପ୍ରାୟ କୁଳତ୍ୟାଗିନୀ ବିଧବା। ସୀତାର ଆଦର୍ଶରେ ପବିତ୍ର ବ୍ରହ୍ମଚର୍ଯ୍ୟରେ ଆଶ୍ରମକୁ ଦେବଭୂମିରେ ପରିଣତ କରି ସେମାନେ ଅଦ୍ୟାପି ସେଇଠି ବାଲ୍ମୀକିଙ୍କ ତପୋବନ ରଚନା କରି ରହିଛନ୍ତି।

ଅଦ୍ୟାପି ଜଗନ୍ନାଥ କାରବାର କରନ୍ତି, ହେଲେ ଆଉ ପଇସା ଛୁଅଁନ୍ତି ନାହିଁ। ତାଙ୍କର ଇଷ୍ଟଦେବତା ଶ୍ରୀକୃଷ୍ଣଙ୍କ ଧ୍ୟାନରେ ସେ ଅହୋରାତ୍ର ତନ୍ମୟ। ବ୍ରାହ୍ମଣ ସମାଜ ତାଙ୍କୁ ତ୍ୟାଗ କରିଛି, ଆତ୍ମୀୟସ୍ୱଜନ ବହୁଦୂରରେ ବର୍ଜନ କରିଛନ୍ତି; କିନ୍ତୁ ବ୍ରଜର ଗୋପାଳ ସେହି ନବଘନ କାଳିଆର ପ୍ରେମକୋଳରେ ସେ ପରମ ଆଶ୍ରୟ ପାଇଛନ୍ତି।

# ଉପସଂହାର ।



କୋଡ଼ିଏ ବର୍ଷ ବିତି ଗଲାଣି । କୋଡ଼ିଏ ବର୍ଷ କାଳ ଜଗନ୍ନାଥ କୁଟୀର ଦିଗ ଦିଗନ୍ତରୁ ନାନା ସାଧୁଭକ୍ତ ମହାତ୍ମାଙ୍କୁ ଆକର୍ଷଣ କରି ଅମୃତାନନ୍ଦ ଦାନ କରିଛି । କୋଡ଼ିଏ ବର୍ଷ ମଧ୍ୟରେ କୁଟୀରର ଅନେକ ପରିବର୍ତ୍ତନ ହେଲାଣି, ବୁଢ଼ାମାନେ ମରିହଜି ଗଲେଣି, ଯୁବାମାନେ ତାଙ୍କ ସ୍ଥାନ ଅଧିକାର କଲେଣି, କେବଳ ବଞ୍ଚିଛି ଜଣେ । ସେ ଗୈରିକଧାରିଣୀ ତପସ୍ୱିନୀ ସୀତା, ତାର ଆଉ କେତେ କାଳ । ଦାରୁଣ ଶୂଳବେଗରେ ତା ଜୀବନଦୀପ ନିଭିଲା ପରି ।

କଟକକୁ ଜଣେ ମହାପୁରୁଷ ଆସିଛନ୍ତି । ସମଗ୍ର ଓଡ଼ିଶାରେ ବାବାଜୀ ଅରକ୍ଷିତ ଦାସ ସୁପରିଚିତ । ସେ ଜଗନ୍ନାଥ କୁଟୀରର ପ୍ରିୟ ଅତିଥି । ସୀତାର ଦୀକ୍ଷାଗୁରୁ । ଅରକ୍ଷିତ ଦାସ ଗୈରିକଧାରୀ । ମସ୍ତକରେ ତାଙ୍କର ଜଟାଭାର, ମାତ୍ର ସେ କୌଣସି ବିଶେଷ ଧର୍ମସମ୍ପ୍ରଦାୟଭୁକ୍ତ ନୁହନ୍ତି । ବାବାଜୀ ଦେଶଭକ୍ତ । ଦେଶମାତା ତାଙ୍କର ଇଷ୍ଟଦେବୀ । ଦେଶମାତାର ରାତୁଲ ଚରଣ ତଳେ ତାଙ୍କର ସାଧନାର ପରମ ତୀର୍ଥ । ସୀତା ଅରକ୍ଷିତ ଦାସଙ୍କର ଶିଷ୍ୟା । ସେ ତାଙ୍କଠାରୁ ଯୋଗ, ପ୍ରାଣାୟାମ ଶିକ୍ଷା କରିଛି, ସଙ୍ଗେ ସଙ୍ଗେ ଶିକ୍ଷା କରିଛି ଦେଶମାତୃକାର ଆରାଧନା—'ବନ୍ଦେ ମାତରଂ' ମହାମନ୍ତ୍ର । ସେହି ଜଗନ୍ନାଥ କୁଟୀର ଦେଶମାତାର ମନ୍ଦିର ହୋଇଛି । ପବିତ୍ର ରାମାୟଣ, ଭାଗବତ ପାଠ ଓ ଜାତୀୟ ସଙ୍ଗୀତର ସୁମଧୁର ଝଙ୍କାର ସାନ୍ଧ୍ୟ ଗଗନ ନିତ୍ୟ ମୁଖରିତ କରେ । ସେଠି ଉତ୍କଳର ତରୁଣ ଦଳର ସାଧନାକ୍ଷେତ୍ର ସ୍ଥାପିତ ହୋଇଛି । ଅରକ୍ଷିତ ଦାସ ଦେଶର ଯୁବକବୃନ୍ଦଙ୍କୁ ଉତ୍କଳର ଆରାଧନା ଶିକ୍ଷା ଦେଉଛନ୍ତି । ସୁଦୂର ପଲ୍ଲୀରେ ତାଙ୍କ ନାମରେ ଚହଳ ପଡ଼ି ଯାଇଛି । ସେ ଯେପରି ଦେଶଭକ୍ତ, ସେହିପରି ଦୀନ ଅନାଥବାନ୍ଧବ । ଓଡ଼ିଶାରେ ଯେଉଁଠି ଯେଉଁ ଦୁଃଖ ପଡ଼େ, ବାବାଜୀ ଅରକ୍ଷିତ ଦାସ ସେଠି ଉପସ୍ଥିତ । ବନ୍ୟାରେ, ଦୁର୍ଭିକ୍ଷରେ, ମହାମାରୀରେ ତାଙ୍କର ଓ ତାଙ୍କ ଦଳର ସାହାଯ୍ୟ ଆଗେ ଲୋଡ଼ା ହୁଏ ।

ଆଜି ସେହି ଅରକ୍ଷିତ ଦାସ ପୁଣି କଟକ ଆସିଛନ୍ତି । ସେ ଏକ ସ୍ଥାନରେ ବହୁତ ଦିନ ରହନ୍ତି ନାହିଁ । ନିଖିଳ ଉତ୍କଳରେ ପର୍ଯ୍ୟଟନ ତାଙ୍କର କାର୍ଯ୍ୟ ।

କାହାଠୁଁ କଡ଼ାଏ କଉଡ଼ି ନିଅନ୍ତି ନାହିଁ; କିନ୍ତୁ ତାଙ୍କର କଥା, ତାଙ୍କର ଉତ୍ତେଜିତା ଉତ୍କଳରେ ନବ ଜାଗରଣ ଆଣିଛି । ଉତ୍କଳ ସନ୍ତାନଙ୍କୁ ସେ ଶିକ୍ଷା ଦେଉଛନ୍ତି— ଦେଶ ମା, ଦେଶ ଜନନୀ, ଦେଶ ସ୍ୱର୍ଗ, ଦେଶ ମୁକ୍ତି, ଦେଶ ପ୍ରତ୍ୟେକ ମାନବର ଆରାଧ୍ୟ ଦେବ—ଯେ ଦେଶଦ୍ରୋହୀ, ସେ ଈଶ୍ୱରଦ୍ରୋହୀ । ଦେଶକୁ ଯେ ଭଲ ପାଏ, ସେ ଅକ୍ଷୟସ୍ୱର୍ଗ ଲାଭ କରେ । ତାଙ୍କ ନିକଟରେ ହିନ୍ଦୁ ମୁସଲମାନ, ଓଡ଼ିଆ ବଙ୍ଗାଳି, ବ୍ରାହ୍ମଣ ଶୂଦ୍ରର ଭେଦ ନାହିଁ । ସେ ସମସ୍ତଙ୍କ ହାତରେ ଖାଆନ୍ତି, ସମସ୍ତଙ୍କ ଘରେ ରହନ୍ତି । ସମସ୍ତେ ତାଙ୍କୁ ଆପଣାର ଭାବି ଶ୍ରଦ୍ଧା ଭକ୍ତି କରନ୍ତି ।

ସୀତାର ସେ ଗୁରୁ । ତାର ଅନ୍ତିମ କାଳରେ ଗୁରୁଦେବର ଚରଣ ଦର୍ଶନ ଲାଗି ସୀତା ବ୍ୟାକୁଳ । ଗୋଲକନାଥ ଗୁରୁଙ୍କୁ ପୁରୀରୁ ଘେନି ଆସିଛି । ସୀତାର ଶେଷ ଅନୁରୋଧ ରକ୍ଷା କରିବାକୁ ସେ ଆସିଛନ୍ତି ।

ଜଗନ୍ନାଥ କୁଟୀର ତାଙ୍କର ପାଦସ୍ପର୍ଶରେ ଧନ୍ୟ ହୋଇଛି । ଶୁଷ୍କ ତୃଣ ଶଯ୍ୟାରେ ଶାୟିତା ସୀତା ଅସହ୍ୟ ଶୂଳ ବେଦନାରେ ମୁମୂର୍ଷୁ ପ୍ରାୟ । ଗୁରୁଦେବ ଆସି ତାହାର ଶଯ୍ୟା ପାର୍ଶ୍ୱରେ ଉପବେଶନ କଲେ । ତାହାର ଅତି ପ୍ରିୟ ଗାୟତ୍ରୀ ମନ୍ତ୍ର ବାରମ୍ବାର ଜପ କରିବାକୁ ଲାଗିଲେ । ତାଙ୍କର ମଧୁର ସ୍ୱର କର୍ଣ୍ଣରେ ପ୍ରବେଶ କଲା ମାତ୍ରେ ସୀତା ଆଖି ମେଲାଇଲା । ସମ୍ମୁଖରେ ଗୁରୁଦେବଙ୍କୁ ଉପବିଷ୍ଟ ଦେଖି କ୍ଷୀଣ ହସ୍ତ ବଢ଼ାଇ ପାଦଧୂଳି ମୁଣ୍ଡରେ ମାରିଲା । ଅନ୍ତିମ ପଥର ଯାତ୍ରୀ ସେ, ଆଉ ଏ ଶ୍ରୀଚରଣ ଦେଖି ପାରିବ ନାହିଁ, ଆଉ ଜଗନ୍ନାଥକୁଟୀର-ବାସୀ ତାହାର ସ୍ନେହାଶ୍ରୟ ପାଇବେ ନାହିଁ । ତାକୁ ଘେରି ସମସ୍ତେ ବିଳାପ-ନିରତ । ଦୁଃଖିନୀ ବିଧବାମାନଙ୍କର ସେ ଥିଲା ଜନନୀ, ଅନାଥ ଶିଶୁମାନେ ତାହାର ସେବାରେ ମନୁଷ୍ୟ ହୋଇଛନ୍ତି । ଶତାଧିକ ପରିଜନଙ୍କୁ ଛାଡ଼ି ସେ ଆଜି କୁଆଡ଼େ ଯାଉଛି ? ନୀରବ ନୟନରୁ ସମସ୍ତଙ୍କର ତପ୍ତଧାରା ପ୍ରବାହିତ । ଗୁରୁଦେବ ସ୍ୱସ୍ତି ବାଚନପୂର୍ବକ ତାହାର ତପ୍ତ କପାଳ ସ୍ପର୍ଶ କଲେ । ସୀତା ଶାନ୍ତି ଲାଭ କରି ନିଦ୍ରାଗଲା ।

ରାତି ତୃତୀୟ ପ୍ରହର, ଗୁରୁଦେବ ସୀତାର ଶଯ୍ୟା ନିକଟରେ ସେହିପରି ପଦ୍ମାସନରେ ଉପବିଷ୍ଟ । ନିକଟରେ କେହି ନାହିଁ । ଗୋଟିଏ ଅପୂର୍ବ ସ୍ୱପ୍ନ ଦେଖି ସୀତା ଚେଇଁ ଉଠିଲା । ଦେଖିଲା ସମ୍ମୁଖରେ ଗୁରୁଦେବ । ଅଦ୍ଭୁତ ଉଜ୍ଜ୍ୱଳ ଜ୍ୟୋତିରେ ତାହାର କୋଟରଗତ ନୟନଦ୍ୱୟ ଉଜ୍ଜ୍ୱଳ ହୋଇ ଉଠିଲା । ସେ ଅମାନୁଷିକ ସ୍ୱରରେ କହିଲା—"ଠାକୁର— ତମେ କିଏ ? ପ୍ରଭୁ, ମତେ ଛଳନା କରୁଛ ?" ତାହାର ହାତ ଯୋଡ଼ିକ ଗୁରୁଦେବଙ୍କ ଚରଣ

ସମ୍ଭ୍ରମରେ ଉତ୍ଥିତ ହେଲା । କିନ୍ତୁ ସେ ଠିକ ପାରିଲା ନାହିଁ । ତାର ଜୀବ ଗ୍ରନ୍ଥି ଆସିଥିଲା । ଗୁରୁଦେବ ନିଜେ ପାଖକୁ ଘୁଞ୍ଚିଗଲେ, ତାଙ୍କର ବିଶାଳ ନୟନଦ୍ୱୟ ଅଶ୍ରୁରେ ଉଜ୍ଜ୍ୱଳ, ସେଥିରେ ଦିବ୍ୟଜ୍ୟୋତି । ସେ ସୀତା ମୁହଁକୁ ଘଡ଼ିଏ କାଳ ଚାହିଁ ରହିଲେ । କ୍ଷୀଣ ପ୍ରଦୀପରେ ସେ ମୂର୍ତ୍ତି ମହାମହିମାମୟ ଦିଶୁଥିଲା । ତପସ୍ୟା-କ୍ଳିଷ୍ଟ ବଦନରୁ ସ୍ୱର୍ଗୀୟ ଆଭା ବିଚ୍ଛୁରିତ ହେଉଥିଲା । ପ୍ରଶାନ୍ତ କଣ୍ଠରେ ଗୁରୁଦେବ କହିଲେ—"ସୀତା ! ତପସ୍ୱିନୀ ! ମୁଁ ରଘୁନାଥ !"

ସୀତା ଆଖି ବୁଜିଲା । ତାହାର ଓଠ ଟିକିଏ ହଲିଲା । ଅସ୍ପଷ୍ଟ ଶୁଣାଗଲା, 'ରଘୁନାଥ, ଗୁରୁଦେବ !' ଆଉ ନାହିଁ, ଆଖିର ଦୁଇ କୋଣରେ ବଡ଼ ବଡ଼ ଦୁଇ ଟୋପା ଲୁହ ଗଡ଼ିଗଲା ।

× × × ×

ସେ ଦିନ ଘୋର ବର୍ଷା । ଆକାଶରେ ଅମା ନିଶାର ଘନାନ୍ଧକାର । ଜନ-ମାନବହୀନ 'ସତୀଚଉରା'ର ମଶାଣି ଉପରେ ଧୀରେ ଧୀରେ ଜଳୁଥିଲା ଗୋଟିଏ ସଦ୍ୟ ଚିତା । ଅଦୂରରେ ଖଣ୍ଡେ ଭଙ୍ଗା ପଥର ଉପରେ ବସିଥିଲେ ବାବାଜି ଅରକ୍ଷିତ ଦାସ । ତାଙ୍କ ଚକ୍ଷୁରେ ଆଜି ପ୍ରେମାଶ୍ରୁଧାରା, ହୃଦୟରେ ମହା ଭାବ । ସେ ନୈଶାନ୍ଧକାର ଆକାଶକୁ ଅନାଇଁ ବିହ୍ୱଳ କଣ୍ଠରେ କହିଲେ—"ସୀତା ସତୀ ! ମହା ସତୀ ! ସତୀଚଉରା, ସତୀର ଦେହ ବକ୍ଷରେ ଧାରଣ କରି ତୁ ପବିତ୍ର, ତୋ ନାମ ସାର୍ଥକ । ଯୁଗଯୁଗାନ୍ତ ତୁ ଏହି ପବିତ୍ର ଦେହର ଭସ୍ମାବଶେଷ ବକ୍ଷରେ ଧରି ଥା । ଯାଅ ସୀତେ ! ଯାଅ ! ଜନ୍ମଜନ୍ମାନ୍ତରରେ ମିଳନ ହେବ ! ଯାଅ ସୀତେ ! ପରଲୋକରେ ପୁଣି ସାଥୀ ହେବା ! ମହା-ସତୀ ଯାଅ !

ବାବାଜି ଭଗବାନଙ୍କର ସ୍ତବ କରୁ କରୁ ସ୍ଥାନ ତ୍ୟାଗ କଲେ । ସତୀର ଚିତାଗ୍ନି ନିଭିଗଲା । କିନ୍ତୁ ସତୀଚଉରା ନିଜ ନାମର ମହିମାରେ ବିରାଜିତ । କାଠଯୋଡ଼ି ନିର୍ଜନ ବକ୍ଷ ଉପରୁ ନଦୀକୁ ଚାହିଁ ସେ ଅଦ୍ୟାପି ସୀତା ଓ ରଘୁନାଥର କରୁଣ ଇତିହାସ ଶୁଣାଏ, ଅଦ୍ୟାପି କହେ ବାବାଜି ଅରକ୍ଷିତ ଦାସର କଥା; କିନ୍ତୁ ସେ ଭାଷା ମାନବ ବୁଝି ପାରେ ନାହିଁ । ମାନବ ବୁଝୁଥିଲେ ଓଡ଼ିଶା ଆଜି ସତୀଚଉରା ପରି ଗୋଟାଏ ବିରାଟ ଶ୍ମଶାନ ହୋଇଥାନ୍ତା କି ? ଜାତିଭେଦ, ସାମାଜିକ ଅତ୍ୟାଚାର, କୁସଂସ୍କାରର ଘନ-ଅନ୍ଧକାର ଭିତରର ଜଡ଼ ପ୍ରାଣରେ ମୁକ୍ତିର ମହାନନ୍ଦ ଛୁଟାଇଥାନ୍ତା କି ?

ତଥାପି ସତୀଚଉରା ଓ କାଠଯୋଡ଼ି ଦୁହେଁ ଦୁହିଁଙ୍କି ଶୁଣାଇବା ଭଳି କହୁଛନ୍ତି—"ସତେ ସଖି ! ଓଡ଼ିଆ ପ୍ରାଣରେ ନବ ଜାଗରଣ ଆସିବ ?"

ସେ କେଉଁ ଦିନ ?

ମୁଁ ମଧ୍ୟ ଭାବୁଛି ସେ କେଉଁ ଦିନ ?



**କୁନ୍ତଳାକୁମାରୀ**

କଟକ

୧୯୨୭ ।

Printed by V. Kar, U. S. Press, Cuttack.

ଉତ୍କଳଭାରତୀ କବି ଶ୍ରୀମତୀ କୁନ୍ତଳାକୁମାରୀଙ୍କର

# ଭାରତୀ-ତପୋବନ ।

## ଓଡ଼ିଆ ମହିଳାର ପବିତ୍ର ସାଧନାମନ୍ଦିର ।

ଅମଳକମଳାସନା, କୁନ୍ଦେନ୍ଦୁପ୍ରଭା, ଭାରତୀରାଣୀଙ୍କର କରୁଣାକଣା ଲାଭ କରି କବିଙ୍କ ହୃଦୟବିମୋହନ ବୀଣାତାର, ଅନାବିଳ ଝଙ୍କାରରେ ଝଙ୍କୃତ ହୋଇଅଛି; ଶବ୍ଦସାଗର ମନ୍ଥିତ ହୋଇ ଶତ ଶତ ମହାର୍ଘ ଶ୍ରବଣମନୋହର ବାକ୍ୟପରମ୍ପରା କୁସୁମମାଳାବତ୍ ଗ୍ରନ୍ଥିତ ହୋଇଅଛି, ସାହିତ୍ୟଭଣ୍ଡାର ଲୁଣ୍ଠନ କରି ସାରବତୀ, ରସପୂର୍ଣ୍ଣା, ସଦଳଙ୍କାରବିଶିଷ୍ଟା କବିତାନିଚୟ ବିକୀର୍ଣ୍ଣ ହୋଇଅଛି, ସର୍ବୋପରି ଆପଣାର ଅକୃତ୍ରିମ ଧର୍ମାନୁରାଗର ମୋହମୟୀ ପ୍ରତିଭନ ତା ଗ୍ରନ୍ଥ୍ୟା ବିସ୍ତାରିତ ହୋଇଅଛି । ତାଙ୍କର ଯେଉଁ ସୁଧାମୟୀ ଲେଖନୀ ଉତ୍କଳରାଣୀଙ୍କୁ ଚିର ଜ୍ୟୋତିର୍ମୟ-ଗୌରବମୁକୁଟରେ ବିଭୂଷିତ କରିଅଛି, ଆନନ୍ଦରେ ଆତ୍ମହରା, ଉଚ୍ଛ୍ୱାସରେ ତନ୍ମୟ, ବିରହରେ ପ୍ରକମ୍ପ, ପ୍ରେମରେ ପୁଲକ ଆଣି ଦେଇଅଛି । ସେହି ନନ୍ଦନମନ୍ଦାର ସମକୋମଳ, ସୁନ୍ଦର, ସତ୍ସାହିତ୍ୟ-ଶତଦଳବିଜ ଗ୍ରନ୍ଥଶ୍ରେଣୀ, ପାଠକପାଠିକା ସମ୍ପ୍ରଦାୟ ତତ୍ପର ହେଉନ୍ତୁ । ଉତ୍କଳ ଗୁଣର ଗୌରବକୁ ଆଦର କରିଅଛି ।

୧ । ଅଞ୍ଜଳି —(ସତ୍‌ସାହିତ୍ୟ-ନନ୍ଦନର ପାରିଜାତ, ସାହିତ୍ୟଧ୍ୱାନ୍ତଗଗନର କନକକିରଣଚ୍ଛଟା, ବନ୍ଧୁ ପୂଜା ପାଇଁ ଶୁଭ୍ର ତୁଳସୀମଞ୍ଜରୀ, କାନ୍ତ, କୋମଳସଙ୍ଗତ ପଦ୍ୟ ପୁସ୍ତକ—୨ୟ ସଂସ୍କରଣ ) ମୂଲ୍ୟ ଟ ୧। ମାତ୍ର ।



୨ । ଜିଜ୍ଞାସା—(ଓଡ଼ିଆର ଗୌରବନ୍ତ ଭାଷାପୁଷ୍ପପରାଗରଞ୍ଜିତ, ଚରଣାନ୍ତ-ପରିମଳ ମନ୍ଦାନିଳ ପ୍ରବାହିତ, ସୁସଂସ୍କୃତ, ନିତ୍ୟପାଠ୍ୟ, ସନ୍ତୋଷଜ୍ଞାନର ଅକ୍ଷୟ-ଭଣ୍ଡାର, ପ୍ରଭାତର ଶେଫାଳି, ଶରତର ଜ୍ୟୋତ୍ସ୍ନା, ସୌନ୍ଦର୍ଯ୍ୟର କାମିନୀ, ସରସୀର କମଳ, ନୈଶଗଗନର ତାରା, ଉପବନର ଅଳଙ୍କାର, ସମନ୍ୱୟତରଙ୍ଗରଙ୍ଗ କବିତା-ସାଗର) ମୂଲ୍ୟ ଆଠ ଅଣା ।



୩ । ଅର୍ଚ୍ଚନା—( ନବପ୍ରକାଶିତ ଅମୀୟ ସର୍ଜନା, ଅତୁଲ୍ୟ ରଚନା, ସଙ୍ଗୀତର ଉପବନ, ସୁଲଳିତ, ସୁମଧୁର ସୁଧାକ୍ଷରିତ ସୁଧାଧାରା, ସମ୍ମୋହନ ଲୀଳାମାଧୁରୀ, ଭାବର ସ୍ୱଚ୍ଛ ମନ୍ଦାକିନୀଧାରା ସୁଚିନ୍ତାଶୀଳ ଅମୀୟମୟ ଭାଷାର ବିଜୟ-ବୈଜୟନ୍ତୀ) ମୂଲ୍ୟ ପାଞ୍ଚ ଟଙ୍କା ।



୪ । ଭ୍ରାନ୍ତି— ୨ୟ ସଂସ୍କର
(ଗୋଟିଏ ନିଶ୍ୱାସରେ ପଢ଼ିବା ଉପନ୍ୟା
ହିନ୍ଦୁପରିବାରର ଜ୍ୱଳନ୍ତଚିତ୍ର; ଉପନ୍ୟା
କୋଇଲଖଣିର ହୀରାଖଣ୍ଡ) ମୂଲ୍ୟ ଛ
ଅଣା ।



୫ । ପରଶମଣି —ଦ୍ୱିତୀ
ସଂସ୍କରଣ ( ଉପନ୍ୟାସ ସେକ
ପରଶମଣି, ନାମରେ ନୁହେ, କଥା
ନୁହେ, ତାର ପ୍ରତି ଛତ୍ର ପରଶମଣି
ଅଭିନବ ଗାର୍ହସ୍ଥ୍ୟ ଚିତ୍ର ପ୍ରସ
ଉପନ୍ୟାସ) ସୁଲଭ ମୂଲ୍ୟ ଆଠ ଅଣା



୬ । କାଳୀବୋହୂ—(ଉପନ
ବେଗମମହଲର କୋମଳ ଗୋ
ଫୁଲ, ଗୁଣରେ କଳା, ରୂପରେ ଜ
ଉଜ୍ଜ୍ୱଳା, ନବଜାଗରଣର ଦୁନ୍ଦୁଭି,
ସମାଜର ନବନ୍ୟାସ, ଗୃହିଣୀର ସି
ଫରୁଆ, ଗୃହସ୍ଥର ଗୃହଲକ୍ଷ୍ମୀ ) ମୂ
ପାଞ୍ଚ ଅଣା ।

